


## ନକୁଳ ଚନ୍ଦ୍ର ସାହୁ (୧୯୫୧) :

କବିତାରେ ଆତ୍ମଅନ୍ୱେଷା ଓ ଚିରନ୍ତନ ମାନବାତ୍ମାର ଆର୍ତ୍ତନାଦକୁ ଲିପିବଦ୍ଧ କରିବାରେ ସମର୍ଥ ଶବ୍ଦଶିଳ୍ପୀ ନକୁଳ ଚନ୍ଦ୍ରଙ୍କ ସାରସ୍ୱତ ପରିଧି ବହୁଧା ବିଭକ୍ତ, ବିଚିତ୍ର ଓ ବର୍ଣ୍ଣିଳ । ଦାର୍ଶନିକତାର ଅନ୍ତର୍ଦୃଷ୍ଟି, ତାଙ୍କର କାବ୍ୟ ଜିଜ୍ଞାସାକୁ କରିଥାଏ ମାର୍ମିକ, ହୃଦ୍ୟ ଓ ସମ୍ବେଗବିଧୂର । ‘ଏବଂ ପୁନରପି’ ତଥା ‘କୂଶସ୍ଥ ଋତୁ ଓ ଗୋଟିଏ ମିନତି’ କବିତା ସଂକଳନ, ତାଙ୍କ ବିମଳ କାବ୍ୟ ଚେତନାର ଅନ୍ତରଙ୍ଗ ସ୍ୱାକ୍ଷର ବହନ କରେ ।

ଓଡିଆ ସାହିତ୍ୟର ଅଭିନବ ଇତିହାସ
ଡକ୍ଟର ବେଣୁଧର ପାଢୀ
(ଧ୍ୱନି ପ୍ରତିଧ୍ୱନି,ରବିବାର ୩.୧୧.୨୦୧୩)

# ବାକ୍‌ମୟୀ

(କବିତା)


କବି : ନକୁଳ ଚଂଦ୍ର ସାହୁ
'ଶବ୍ଦ ଘର', ଗୋଡିସାହି
କଟକ-୭୫୪ ୦୦୬
ମୋ- ୯୪୩୭୭୪୦୨୬୪





ପ୍ରକାଶକ : କାବ୍ୟଲୋକ
ନିଜିଗଡ କୁରୁଖୀ,ହରିରାଜପୁର
ଜଟଣୀ,ପୁରୀ-୭୫୨୦୫୦
ମୋ- ୯୪୩୭୨୮୩୯୦୭

ପ୍ରଚ୍ଛଦ : ବିଜୟ ପ୍ରଧାନ

ମୁଦ୍ରଣ : ଜଗନ୍ନାଥ ଗ୍ରାଫିକ୍ସ, ଭୁବନେଶ୍ୱର-୨୨

ପ୍ରଥମ ପ୍ରକାଶ : ୨୦୧୭

ମୂଲ୍ୟ : ୧୫୦ଟଙ୍କା


---

## VAKMAYEE

(A collection of Poetry)


By : Nakul Chandra Sahoo

Published by : **KAVYALOKA**

First Edition : 2017

Price : Rs. 150/-





**ISBN 978-93-85316-57-9**

ଶିକ୍ଷାଦାନ ପରି ଏକ ପବିତ୍ର ବୃତ୍ତି ଦ୍ୱାରା
ନୂଆ ପୃଥିବୀ ଗଢିବାରେ ବ୍ରତୀ
ସମର୍ପିତ ଦମ୍ପତି:
ମୋ ପ୍ରିୟ ଅନୁଜ ସନ୍ତୋଷ କୁମାର ସାହୁ
ଓ ତା' ପତ୍ନୀ ଦୀପ୍ତିମୟୀଙ୍କୁ
ଶ୍ରଦ୍ଧାପୂର୍ଣ୍ଣ ଉପହାର

-ବଡଭାଇ

# ଶବ୍ଦ ଘରର ଭୂମି ଓ ଭିତ୍ତି

।।ଏକ।।

କବିତା ଶବ୍ଦର ଅବତାର ଏବଂ ଗୋଟିଏ ମୁହୂର୍ତ୍ତର ମୂର୍ତ୍ତି ।

କବିତା କବିଙ୍କ ବଂଚୁଥିବା ଜୀବନର ଉଚ୍ଚାରଣ । ତାହାର ଆଚରଣ ଖାଲି ବାହ୍ୟିକ ନୁହେଁ, ବରଂ ମାନସିକ ଓ ପ୍ରାଣୀକ । ମାନସିକ ଓ ପ୍ରାଣୀକ ଚେତନାର ଚିତ୍ର କବିତା । କବିତା ମାନବ ଅଂତର୍ମନର ବାର୍ତ୍ତା ।

ମୋ କବିତା ମୋ ଜୀବନର ଅଂଶ ।

ମୋ କବିତା ମୋ ଆତ୍ମ-ଜୀବନୀ ବିଶେଷ ।

ମୋ କବିତା ମୋ ଅନୁଭୂତିର ଚିତ୍ର । କବିତା ମୋ ଭୋଗ ବୈଭବର ବିଭୂତି । ଆୟୁଷ ପରି କବିତା ସବୁବେଳେ ମୋ ସହିତ ରହିଛି । ଯେତେ ବେଳେ କବିତା ନାହିଁ ସେତେବେଳେ ମୁଁ ନାହିଁ ।

ସମସ୍ତ ପ୍ରେମର ବାସ୍ତବ ଭିତ୍ତି ଅନ୍ତର୍ଚ୍ଚେତନାର ଅନ୍ୱେଷା । ଅନ୍ତର୍ଚ୍ଚେତନା ଜାଗ୍ରତ ହେବା ବା ଜ୍ୟୋତିର୍ମୟ ହେବା ସ୍ଥିତିର ନାମ 'ପ୍ରେମ' । ପରମ ପ୍ରେମ 'ଶିବ' ।

ମୁଁ ଜାଣିଛି, କବିତା, ଏ ଲଭ୍ ଆଫେୟାର୍ ଉଇଥ୍ ଏକ୍‌ଜିଷ୍ଟେନ୍ସ ।

ମୋ କବିତା ମୋ ପ୍ରେମ । କବିର ପ୍ରେମିକା କେହି ଜଣେ ବ୍ୟକ୍ତି ନୁହେଁ, ସିଏ ନୈର୍ବ୍ୟକ୍ତିକା । 'ଭଲ ପାଇବା'(Love) ହିଁ ଜଣେ କବିଙ୍କ ପ୍ରେମିକା । କବିତା ଏକ ଅନ୍ୱେଷା । ଅନ୍ତର୍ଚ୍ଚେତନାର ଅନ୍ୱେଷା । ସତ୍ୟ ଖୋଜୁଛି ଚିନ୍ମୟ ଆନଂଦଙ୍କୁ, ଯେଉଁଠି 'ଉଦ୍ୟମୋ ଭୈରବଃ', ଜୀବନ ପ୍ରକ୍ରିୟା ନିଜେ ସାଧକ । ନିଜେ, ଏକସ୍ମିନ୍ କ୍ଷଣେ ସର୍ବ ଜଗତ୍ ପରିଣାମନୁଭବତି, ଯୋଗ ଦର୍ଶନ କହନ୍ତି । କାଳର ସୂକ୍ଷ୍ମତମ ଅଣୁ କଳାରେ ବଦଳନ୍ତି । ସଗୁଣ ଚେତନାରେ ସେ ରାଗମୟୀ ହେଲେ ହୁଅନ୍ତି ରସ । ରସୋ ବୈ ସଃ ।

ରସ ସମସ୍ତ ସୌନ୍ଦର୍ଯ୍ୟର ନିର୍ଯ୍ୟାସ ।

ରସ ସୃଷ୍ଟିର ସୂତ୍ର ।

ରସ ଦ୍ୱାରା ସଂସାରର ବସ୍ତ୍ରଟି ବୁଣା ଯାଇଅଛି । ଜୀବନ ବସ୍ତ୍ରକୁ ବୁଣିଥିବା ରସ ସୂତ୍ରକୁ ଅନୁଭବ କରାଏ କବିତା । ରସ ପ୍ରେମର ବସ୍ତୁ । ରସ ଆନଂଦର ବସ୍ତୁ । ବ୍ରହ୍ମ ଆନଂଦ ସ୍ୱରୂପ ଏବଂ ସେହି ସ୍ୱରୂପଟିର ନାମ ରସ । ରସ ଅନ୍ତର୍ଚେତନାର ଜ୍ୟୋତିର୍ମୟ ଚିତ୍ । ସୂକ୍ଷ୍ମରୁ ସୂକ୍ଷ୍ମତମ ପୁଲକର ଅନୁଭବ ।

।।ଦୁଇ।।

କବି କିଏ ? କବି-'ବେଦୋ ବେଦବିଦବ୍ୟଙ୍ଗୋ ବେଦାଙ୍ଗୋ ବେଦବିତ୍ କବିଃ ।' (ଶ୍ରୀ ବିଷ୍ଣୁ ସହସ୍ର ନାମ) । ସେ ଅନ୍ତର୍ଚେତନାର ଜ୍ୟୋତିର୍ମୟ ଚିଦ୍ । ସିଏ ନ ହେଲେ ଅନ୍ୟ ଆଉ କିଏ ସୁଷୁମ୍ନାର ବ୍ରହ୍ମଗଂଠି ଉନ୍ମୋଚନ କରି ଅଢେଇ ବୁଂଦା ଅମୃତ କରି ପାରିବ ବିତରିତ ?

ବ୍ରହ୍ମ କୂଟସ୍ଥରେ ବିଦ୍ୟମାନ । ଗୋଟିଏ ନେପଥ୍ୟରେ ସିଏ ଥା'ନ୍ତି । ସେ ନେପଥ୍ୟ ବା ଅନ୍ତରାଳଟି ହେଲା ଭାବ ଓ ଅନନ୍ତ । ଗୋଟିଏ ଦ୍ୱୈତ ସ୍ଥିତି, କବି ଓ କବିତା ସେମିତି ।

କବିତା କ'ଣ ? ବାହ୍ୟ ଦୃଷ୍ଟିରୁ ଅବଲୋକନ କଲେ କବିତା ସର୍ବଶ୍ରେଷ୍ଠ ଶବ୍ଦ କଳା । କବିତା ଅମୃତ ବିତରିତ ମିଥିର 'ମୋହିନୀ', ଶ୍ରୀବିଷ୍ଣୁଙ୍କ ଅବତାର । 'ମାୟା ବିମୋହିନୀ ନାମ କଳାୟାଃ'... (ବିଜ୍ଞାନ ଭୈରବ); 'ଶିବସୂତ୍ର' କହନ୍ତି, 'ଅହଂ ପ୍ରେମ', ତାହାଙ୍କ ବିଭୂତି (Wealth) କବିତା ଅଟନ୍ତି ।

କବିତା ରଚିତ ହୁଏ ଖାଲି କମ୍ୟୁନିକେସନ୍ ପାଇଁ ନୁହେଁ, କବିତା ରଚିତ ହୁଏ ଅସୀମକୁ ନିଜ ସୀମିତି ସୀମା ଭିତରକୁ ଉତାରି ଆଣିବାକୁ ଏବଂ ମୁଁ ଉତାରି ଆଣିଛି ମଧ୍ୟ । କବିତା ବିପୁଳର ଅନୁଭବ । ଆତ୍ମିକ ଓ ପ୍ରାଣିକ ଚେତନାରେ ବିଦ୍ୟମାନ ଅରୂପଙ୍କ ରୂପାୟନ । ଯାହା ଚିଦାକାଶ (ସୃଜନୀର ଭୂମି) ତାହା ମୋ କବିତାରେ ଘଟାକାଶ ଓ ମଠାକାଶ । କବିତା, 'ଇଜ୍ ଏ ୱେ ଅଫ୍ ଲିଭିଂ' କବିଟିର ବଂଚିବା ଶୈଳୀ, ଯେଉଁଥିରେ ମୁଁ ବଂଚିଛି । ଏହା ଅନ୍ୟମାନଙ୍କ ବଂଚିବା ପରି ନୁହେଁ ସୁଲଭ । କବିତା ମୋ ଭିତରର ଗାଢ ନୀରବତା, ତାହାକୁ ମୁଁ ଶବ୍ଦରେ ଦୃଶ୍ୟମୟ କରିଛି । ମୋ ନୀରବତା ମୋ ପ୍ରାର୍ଥନା ଏବଂ ମୋ ପ୍ରାର୍ଥନା ମୋ ହୃଦୟ ସଂଗୀତ । ଓଁ ପରି ଏହା ଚିର ପବିତ୍ର । ଏଥିରେ ଅପଭ୍ରାନ୍ତି ନାହିଁ । ଏଥିରେ ଚେତନା ହୋଇଛି ବିସ୍ତୃତ ଏବଂ ପରିବ୍ୟାପ୍ତ । ଉଚ୍ଚରୁ ଉଚ୍ଚତମକୁ ସ୍ପର୍ଶ କରିବାକୁ ଜୀବନ ପ୍ରକ୍ରିୟା ପାପୁଲି ବଢାଇ ହୋଇଛି ସଫଳ । ଏଥିରେ ଗଡ୍ ଇଜ୍ ଏ ପର୍ସନ୍ ଉଇଥ୍ ଫର୍ମ୍, ତାହା ମୋ କବିତାର ଉଲ୍ଲାସ (Ecstasy), ବା ମୋ କବିତାର ସ୍ୱାଦ (the teast) । କବିତାରେ ମୁଁ ଈଶ୍ୱରଙ୍କ ସହିତ ଆଲିଙ୍ଗନାବଦ୍ଧ । ଈଶ୍ୱର ଓ ମୋ ମଧ୍ୟରେ

ସଂଳାପ ମୋ କବିତା । ସୁତରାଂ ମୁଁ ଓ ଈଶ୍ୱର ଏକ ନୋହୁଁ । ମୁଁ କ୍ଷୁଦ୍ର ମୀନଟିଏ, ସିଏ ମୀନାଳୟ (ସମୁଦ୍ର) । ଅସୀମ ନୀଳିମାର ଲୋଭନୀୟ ଶୂନ୍ୟ ବଉଦ ପଟଳ । 'ଭାଗବତ'କୁ ଚିହ୍ନାଇ ଦେଇଛନ୍ତି ଶ୍ରୀ ପରାଶର ପୁତ୍ର ବ୍ୟାସ । ଅଚିକିତ୍ସ୍ୟ ଅସୁସ୍ଥ ପ୍ରାଣଧାରାର ସୁକୋମଳ ଅଭିବ୍ୟକ୍ତି କବିତା ।

କବିତା ପୀଡ଼ିତ ମନର ଚିକିତ୍ସା ।

କବିତା ଶବ୍ଦ ତଳେ ପ୍ରଚ୍ଛନ୍ନ କବିଙ୍କ ବେଦନାର ଅନ୍ତଃସଲିଳା ପ୍ରବାହ । ଚକ୍ଷୁକୁ ଦିଶେ ଯାହା ତାହା ଶାବ୍ଦିକ ସୌନ୍ଦର୍ଯ୍ୟମୟ ପରିବେଶ । ସୁଷମାର ସୁବିଶାଳ ଆନଂଦ ।

ସୁଷମା ଦୁଇ ପ୍ରକାର । ପ୍ରଥମ ଶବ୍ଦ ବସାଣ ଓ ପଂକ୍ତି ସଂଘଟନ । ଦ୍ୱିତୀୟ ମର୍ମସ୍ପର୍ଶୀ ଚିତ୍ରକଳ୍ପଙ୍କ ପ୍ରତୀକାତ୍ମକ ବାସ୍ତବବାଦୀ ଉପଲବ୍ଧି ।

ଆର୍କିଟାଇପ୍‌ରେ ମିଥ୍‌ର ମୟୂରନୃତ୍ୟ ଓ ମୟୂରୀର କାମାତୁରା ଡାକ ହୃଦୟର ବନଭୂମିକୁ ପୁଳକରେ କରିଦିଏ ଜୀବନ୍ତ । ଶୁଷ୍କ ପ୍ରାଣ ହୋଇଯାଏ ପଲ୍ଲବିତ । ଏଣୁ ସମସ୍ତ ଭଲ କବିତାର ଗୋଟିଏ ସ୍ୱଭାବ, ସେମାନେ ସୁସ୍ୱାଦିଷ୍ଟ ।

କବିତାର ବିଷୟ ସବୁବେଳେ ଏକ । ସେହି ବିଷୟ ମୁଦ୍ରାର ଦୁଇପାର୍ଶ୍ୱ, ପ୍ରେମ ଓ ଈଶ୍ୱର । ଖ୍ରୀଷ୍ଟିୟାନ୍ ଚେତନାରେ ତାହା, ଲଭ୍ ଇଜ୍ ଗଡ୍, ମାତ୍ର ଗୋଟିଏ । ପ୍ରେମ ଓ ଈଶ୍ୱରଙ୍କୁ ବାଦ ଦେଲେ ମାନବ ଅନୁଭୂତି ପାଖରେ ନାହିଁ ଅନ୍ୟ କିଛି ଦୁର୍ମୂଲ୍ୟ ଐଶ୍ୱର୍ଯ୍ୟ । ଏହି ଦୁଇତତ୍ତ୍ୱ ମାନବ ପ୍ରାଣଧାରାକୁ ସୃଷ୍ଟିର ଆରମ୍ଭରୁ କରି ଆସିଛନ୍ତି ପୀଡ଼ିତ । ଦୁଇଟି ଯାକ ଅପ୍ରାପ୍ତ୍ୟ ବସ୍ତୁ ଏବଂ ଅତିମାନସିକ ବାସ୍ତବବାଦୀ କଳ୍ପନା ।

ମାନବର ଅନ୍ୱେଷା ଓ ଅଭୀପ୍ସା ବ୍ୟତୀତ ନୂତନ ବସ୍ତୁ କିଛି ନଥାଏ କବିତାର ବିଷୟ । ଜଳଧାର ନିମ୍ନକୁ ପ୍ରବାହିତ ହେବାପରି, ଅଗ୍ନି ଊର୍ଦ୍ଧ୍ୱକୁ ଶିଖାୟିତ ହେବାପରି ଏବଂ ଜୀବନନଦୀ ମୃତ୍ୟୁ ମହାସମୁଦ୍ର ଦିଗକୁ ଧାବମାନ ହେଉଥିବା ପରି ସମସ୍ତ କବିତାର ବିଷୟ ଏକ । ମାତ୍ର ଦେଖାଯାଏ ଅନେକ । ଅନେକ ବକ୍ତ୍ର ନୟନମନେକାଦ୍ଭୁତ ଦର୍ଶନମ୍ । ....ରୂପାଣି ଶତଶୋଽଥ ସହସ୍ରଶଃ । ସମକାଳ କବିତାର ଯଥାର୍ଥ ବିଷୟବସ୍ତୁ ମାତ୍ର ଗୋଟିଏ, ଜୀବନର ଉଦ୍‌ଘୋଷଣା ।

ଦୁଗ୍ଧ ଭିତରେ ପ୍ରଚ୍ଛନ୍ନ ଘୃତପରି ତା' ଭିତରେ ବଂଦୀ ଈଶ୍ୱର । ତା'ରି ଭିତରେ ସଦ୍ୟଜାତ ପରି ଲୁକ୍‌କାୟିତ ସୁବାସିତ, ଚିକ୍‌କଣ ଓ ଶୁଭ୍ର-କୋମଳ ପ୍ରେମ । ଜୀବନ ଭିତରେ ପୁଣି ନାହିଁ ଯେ କ'ଣ ? କବିତା କରିଛି ତା'ଉଚ୍ଚାରଣ । ଜୀବନ ଯାହା ଓ ଯେମିତି ମୋକବିତାରେ ତାକୁ ସେମିତି ଠିକ୍ ଠାକ୍ ରଖିବାକୁ ମୁଁ ପ୍ରାଣପଣେ ଉଦ୍ୟମ କରିଛି । କବିତାକୁକବିତା ଭଳି ଅଭିବ୍ୟକ୍ତ କରିଛି । ମୋ କବିତା ବଳିଷ୍ଠ । ମୋ ଭାଷା ଶକ୍ତ । ଯେଣୁ ମୋ କବିତାର ଅବ୍‌ଜେକ୍ଟ ସତ୍ୟ (Truth) । ମୋ କବିତା ମୋ ଚେତନାର ପବିତ୍ରତମ ଅର୍ଘ୍ୟ । ସୃଷ୍ଟିର ସକଳ ଜୀବନ ଦେବତାଙ୍କ ପ୍ରତି ନୈବେଦ୍ୟ ।

।।ତିନି।।

ବିଶ୍ୱାୟନର ନୂଆ ଅଧ୍ୟାୟରେ ପଣ୍ୟର ପ୍ରଭାବ ପ୍ରବଳ । ମୁଦ୍ରା ରାକ୍ଷସର ଦୌରାତ୍ମ୍ୟକୁ ସଫ୍ଟୱୟାର ପଂଜୁରୀରେ କୁମ୍ଭକର୍ଣ୍ଣପରି ଶାୟିତ କରି ରଖିଛି ବିଜ୍‌ନେସ୍ ପରିଚାଳନା ପ୍ରଶାସକ । ତା'ଦୃଷ୍ଟିର ଟେକ୍‌ନିକ୍‌ରେ ଇମୋସନ୍ ଟ୍ରେଡିଂ ବଦଳିଛି । ତେଣୁ ମାନବର ଭଲ ପାଇବା ବଦଳିଛି । କ୍ଷୁଧା ବଦଳିଛି । ସ୍ନେହ ବଦଳିଛି । ବଦଳିଛି ମମତାର ସ୍ୱଭାବ । ବଦଳା ପରିବେଶର ବିଗ୍ ବଜାରକୁ ମୋ କବିତା ଅନ୍ତର୍ବସ୍ତ୍ର ଆକୃତିର ପୋଷାକ ପରିଧାନ କରି ତା' ଆକର୍ଷଣୀୟ ଅଙ୍ଗ ପ୍ରଦର୍ଶନ ପାଇଁ ଆସି ନାହିଁ । ସେ ତା' ଆଧୁନିକତାର ସୀମା ମଧ୍ୟରେ ରହିଛି, ଯେମିତି ଜଣେ ସଂଭ୍ରାଂତ ଯୁବା ପ୍ରେମିକା ! ଯିଏ ସଂସାରକୁ ଜାଣେ, ସମାଜକୁ ଚିହ୍ନେ ଏବଂ ଜୀବନର ପ୍ରାକୃତିକ ସ୍ୱଭାବକୁ ବଂଚେ ।

ମୁଁ ଜାଣିଛି, କବିତା ନୁହେଁ ଗୋଟିଏ ଖାଉଟି ସାମଗ୍ରୀ (Commodity to purchase);କବିତା, ଏ କାଇଣ୍ଡ୍ ଅଫ ଇଲ୍ୟୁଜନ୍ ! ପାଠକ ପାଠିକା ଏହାକୁ କବିଙ୍କଠାରୁ କେବଳ କରିଥାନ୍ତି ଅର୍ଜନ । କବିତାର ରାସ୍ତା ଅସୀମିତ ଓ ଅସମାପ୍ତ ! ଯେମିତି ପ୍ରେମ ପଥ ! ଥରେ କେହି ଏହି ପଥରେ ଆରମ୍ଭ କଲେ ଯାତ୍ରା ଆଉ ଫେରିପାରି ନଥାଏ ପଛକୁ ! ଯଦିଓ, କ୍ଷୁରସ୍ୟଧାରା ନିଶିତା ପଥସ୍ତତ ! କେବଳ ଆଗକୁ, ଆଗକୁ ଏବଂ ଆଗକୁ !

ଆଗରେ ତାହାଙ୍କ ପ୍ରତ୍ୟେକଟି ମୁହୂର୍ତ୍ତ ଫ୍ରେସ୍ ଓ ୟୁନିକ୍ । ନୁହେଁ ପୁରୁଣା ବା ରିପିଟିଟିଭ୍ । ଫର୍ମ୍ସ ଆର୍ ନିୟୁ । ପ୍ରତ୍ୟେକଟିରୁ ଦିଶୁଛି ତାହାର ସ୍ୱାତଂତ୍ର୍ୟ ଓ ସୌନ୍ଦର୍ଯ୍ୟ ! ସଗୁଣାତ୍ମକ କାଳ କଳା ରୂପ ରଚନାରେ ରତ ! ମୁହୂର୍ତ୍ତ ବଦଳୁଛି, ମୁହୂର୍ତ୍ତ ସହିତ ବଦଳୁଛି କବି ଜୀବନ ! କବି ଅନ୍ତର୍ଚେତନା ପ୍ରତ୍ୟେକଟି ନୂଆ ମୁହୂର୍ତ୍ତରେ ପ୍ରସ୍ଫୁଟିତ କରାଉଛି ନୂଆ ନୂଆ ଗୋଲାପ, ପଦ୍ମ ଓ ଚଂପକ ! ନୂଆ ପ୍ରେମ କୁଆଁ ମେଲୁଥାଏ ! କବି ମୁହୂର୍ତ୍ତର ପ୍ରେମରେ ରତ ! ମୃଗମଦପରି ସୁବାସରେ ଉଚ୍ଛୁଳା ତାଙ୍କ ଜୀବନ ପୁଷ୍ପ, ଈଶ୍ୱରଙ୍କ ଉଦ୍ଦେଶ୍ୟରେ ସଂସାରର ନିବେଦିତ ଅାଂଜୁଳାଏ ଅନନ୍ୟ ଐଶ୍ୱର୍ଯ୍ୟ ! ତାଙ୍କ ବଂଚିବା ଅର୍ଥମୟ !

ପରମ ପ୍ରେମରୂପ କେବଳ ମୁହୂର୍ତ୍ତ (କାଳ)କୁ କରିଥାନ୍ତି ସମ୍ଭୋଗ । ଏହାର ପରିଣାମ ଉତ୍ପନ୍ନ ବିଂନ୍ଦୁ ହିଁ ଅଟେ ସର୍ଜନା । ପ୍ରେମ ରସ ଦ୍ୱାରା ତାହାଙ୍କ ହୃଦୟ ସୁବିଶାଳ ଓ ହୋଇଥାଏ ବ୍ୟାପକ, ସିଏ କବି ! ପୁନଶ୍ଚ-ଗୋଟିଏ ମୁହୂର୍ତ୍ତର କାରୁଣ୍ୟ ଯଦି କାହା ହୃଦୟରୁ ନିଗିଡି ସସାଗରା ଧରାକୁ ଅସୀମ ଶୋକର ଭାବୋଚ୍ଛ୍ୱାସରେ କରିଦିଏ ଆର୍ଦ୍ର, ନ'ଶହ ଅନେଶତ ଶ୍ରାବଣକୁ କରିଦିଏ ବିଗଳିତ, ସିଏ କବି ! ତାଙ୍କ ଆତ୍ମାର ନିଭୃତ ପରିପ୍ରକାଶ କବିତା । ତାଙ୍କ ପ୍ରାଣର ଆଶା, ଆସ୍ପୃହା ଓ ଅଭିଳାସର ସୁମିଶ୍ରିତ ମଧୁଗଙ୍ଗା କବିତା ।

କବିତାର ମୁଖ୍ୟ ଗଢଣ ଉପାଦାନ ଶବ୍ଦ । ସେହି ଶବ୍ଦ ହୁଏ କବିତା, ଯାହା ଭିତରେ ସଂଚିତ ଓ ସଂରକ୍ଷିତ ଥାଏ ନୂଆ ଦୃଶ୍ୟ, ନୂଆ ଭାବର ରୂପ ଓ ନୂଆ ରୂପକଳ୍ପ ! କବିତାର ଶବ୍ଦ ସମସ୍ତ ସିଂବଲ୍, ସାଧାରଣ ବ୍ୟବହୃତ ଶବ୍ଦ ଠାରୁ ଭିନ୍ନ । ଯେମିତି ସାଧାରଣ ତାରରେ ଟିପ ମାରିଲେ ବାଜେ ନାହିଁ ସାରିଗାମା; କେବଳ ବୀଣାଂଚି ତାରରେ ଟିପ ବାଜିଲେ ଉଠିଥାଏ ସପ୍ତସ୍ୱରରେ ମୂର୍ଚ୍ଛନା । କବିତାର ଶବ୍ଦ ବୀଣାଂଚିର ତାର ପରି ସାଂଗୀତିକତାରେ ଜୀବଂତ ଏବଂ ବିଶେଷତ୍ୱ ପ୍ରଯୁକ୍ତ । କବିତା ପଢିଲେ ଘଟିଥାଏ ଦୁଇଟି ଜିନିଷ । ଏକ-ଆଲୋକିତ ହୁଏ ଚେତନା । ଦୁଇ-ଚେତନା ହୋଇଥାଏ ପରିବ୍ୟାପ୍ତ !

॥ ପାଁଚ ॥

ଚେତନା କ'ଣ ?

ଚେତନା ଅହଂକାରର ସାତ୍ତ୍ୱିକ ଅବସ୍ଥା ।

ପ୍ରାଣଶକ୍ତି, ଇଚ୍ଛାଶକ୍ତି ଓ ବାକ୍ ଶକ୍ତିଙ୍କ ମିଶ୍ରିତ ଅବସ୍ଥାର ନାମ ଚେତନା । ଚେତନା ଆତ୍ମଶକ୍ତି । ଗୁଢପଦ ଜାଙ୍ଗଳିକର ଧ୍ୱନିରେ ନାଚି ଉଠିବା ପରି କୁଣ୍ଡଳିନୀ ସେହି ଧ୍ୱନି ଶ୍ରବଣରେ ଉଠେ ନାଚି ! ସେହି କାବ୍ୟିକ ଧ୍ୱନିକୁ କାବ୍ୟାଚାର୍ଯ୍ୟ ଶ୍ରୀ ଅରବିଂଦ ଚିହ୍ନାଇଛନ୍ତି, 'ମଂତ୍ର ଅଫ୍ ଦି ରିଅଲ୍' ଏବଂ କବିତା, 'ଏ ପ୍ରେୟାର' ! କବିତା ବାସ୍ତବତାର ଅର୍ନ୍ତ ଓ ବାହ୍ୟ ଦୃଶ୍ୟ । କାଳର ଟଳମଳ ନୌକାରେ ଅସହାୟ ଓ ଟଳମଳ କବି ନିଜେ ନିଜକୁ କରନ୍ତି ପ୍ରାର୍ଥନା ।

ଶବ୍ଦ ଶିବ ଓ ଶକ୍ତି, ଦୁହିଁଙ୍କ ମିଶ୍ରିତ ରୂପ । ଶବ୍ଦ ଶିବ ଓ ଅର୍ଥ ଶକ୍ତି । ଶବ୍ଦ କବିତାର ଉପାଦାନ ରୂପକ ଭୂମି । କବିତାରେ ଶବ୍ଦ ଏକ ଆଚ୍ଛାଦନ, କବିତାକୁ କରି ରଖିଥାଏ ଆଚ୍ଛାଦିତ । କବିତା ରତ୍ନ ଶବ୍ଦର ଭୂମି ଭିତରେ ଥାଏ ଆରକ୍ଷିତ । ରୂପ ଓ ସୌନ୍ଦର୍ଯ୍ୟ ସଂରଚନା କବିତା ପାଇଁ ଶବ୍ଦର କାମ । ଅର୍ଥର ପ୍ରାଧାନ୍ୟ ଶୂନ୍ୟ । କାରଣ ? ସମକାଳ ଜୀବନ ଓ ତାହାର ଜଟିଳ ସ୍ଥିତି ! ପାପୁଲିର ରେଖା ପରି ମସ୍ତିଷ୍କ ଭିତରେ ଅସଂଖ୍ୟ ସମସ୍ୟାର ରେଖା, ବିକ୍ଷିପ୍ତ ଚିନ୍ତା ଓ ମାନସିକ ଦ୍ୱଂଦ୍ୱ ଜାଲ ଭିତରେ ଛଟପଟ ହେଉଛି ମାନବ ଅସ୍ତିତ୍ୱର ମୀନ । ଗୋଟିଏ ମୁହୂର୍ତ୍ତର ବିଂଦୁରେ ଏକାଧିକ ଭାବନା ଓ ଶାରୀରିକ କ୍ରିୟା ପରି ଶବ୍ଦ ସଂଦିଗ୍ଧ ଏବଂ ଏକାଧିକ ସୂଚନା ବା ଇଙ୍ଗିତର ମିଶ୍ରିତ ବର୍ଣ୍ଣନରେ ଗଠିତ ଇନ୍ଦ୍ରଧନୁ ! ଇଂପ୍‌ସନ୍‌ଙ୍କ ଶବ୍ଦରେ କବିତାରେ ବ୍ୟବହୃତ ଶବ୍ଦ ଗୋଟିଏ ଆଂବିଗ୍ୟୁଟୀ, ଶବ୍ଦ ଏକ ଇଙ୍ଗିତ, ଶବ୍ଦର ଅର୍ଥ ଏହାର ଆବେଗ, ମୋଟ ଦୃଷ୍ଟାନ୍ତଟି ଗୋଟିଏ ଫିଲିଂ (ଭାବ), ବା 'Existence Assertion', ଜୀବନ ପ୍ରକ୍ରିୟାର ଘୋଷଣା । ମୋ ସମସ୍ତ କବିତା ମୋ ଜୀବନ ପ୍ରକ୍ରିୟାର ଏକଏକ ଘୋଷଣା । କେବଳ ଜୀବନବାଦୀ ହିଁ ଏହାକୁ କରି ପାରିବେ ଉପଲବ୍ଧି । ଜୀବନ, ପ୍ରେମ ଓ କବିତା ତିନୋଟି ଯାକ ଅସୀମ ।

॥ ୮ ॥

ଯାହାର ସୀମା ଥାଏ ତାହା ନୀରସ ଓ ପରିମିତ । ପଦ୍ୟରେ ବି ରହିଛି ଜୀବନ ଓ ପ୍ରେମର ଅନୁପମ ବର୍ଣ୍ଣନା । କବିତାରେ ବର୍ଣ୍ଣନା ନୁହେଁ, ପ୍ରତୀକମାନଙ୍କ ଉପସ୍ଥିତି ଦ୍ୱାରା ଜୀବନ୍ତ ଅସ୍ତିତ୍ୱର ଥାଏ ଉପସ୍ଥିତି । ଅନୁଭୂତି ଥାଏ ସଜୀବ । ଯାହା କବିତା ତାହା ନିଜେ ଜୀବନ। ଶବ୍ଦର ପାତ୍ରରେ ବଢାଯାଇଛି ! ଜୀବନ ଈଶ୍ୱରଙ୍କ ଗୋଟେ ନାଁ !

ଅସୀମ ବସ୍ତୁ ବଳୟରେ କବିତା ଅସୀମ ଓ ହୋଇଛି ଆକର୍ଷଣୀୟ । ତୀବ୍ର ଆସ୍ପୃହା ଶିଖା ଅସୀମର ଅବତରଣ ଦ୍ୱାରା ଶବ୍ଦମାନଙ୍କୁ କରିଛି ନୈଃଶବ୍ଦୀୟ ଉଜ୍ଜ୍ୱଳ । ଶ୍ରୀ ଅରବିନ୍ଦ ଲେଖିଛନ୍ତି, To live, to love are signs of infinite things, ଅସୀମଙ୍କ ଏହି ସାଂକେତିକ ଅସ୍ତିତ୍ୱ ମୋ କବିତାରେ ପ୍ରାଣବନ୍ତ । ଅସୀମ ଦିଗ୍‌ବଳୟ ଜୀବନ ଋତୁର ବାସ୍ନାରେ ସୁରଭିତ । ପୁଣିଥରେ ଅନୁମୋଦିତ (Confirm) କରୁଛି, ସସୀମର ଆସ୍ପୃହାରେ ଶବ୍ଦଙ୍କ ପ୍ରାଣଶକ୍ତି ଜୀବନ୍ତ ଓ ପବିତ୍ର ।

॥ ପାଂଚ ॥

'ବେସିକ୍ ଅଫ୍ କ୍ରିଟିସିଜିମ୍' (ପୃଷ୍ଠା-୩୩) S.C. Peper ଆଲୋଚନା କରିଛନ୍ତି Men ought to value literature for being what it is; they ought to evaluate it in terms and in degrees of its literary value. 'ଦି ଇଣ୍ଟେଣ୍ଟ ଅଫ୍ କ୍ରିଟିକ୍' ବହିରେ ସମୀକ୍ଷକ N.Foerster ମୂଲ୍ୟାୟନ ପଦ୍ଧତିର ରଖିଛନ୍ତି ଗୋଟିଏ ସୂଚନା, The Aesthetic Judgement and the Ethical Judgment ! ଗୋଟିଏ କବିତାର ସୌନ୍ଦର୍ଯ୍ୟ ବିଚାର ହେବା ବେଳେ ଅନ୍ୟଟି କବିତାର ଆଚରଣର ବିଚାର, the behaviour of words! 'ପିଓର୍ ପୋଏଟ୍ରୀ' କେବଳ କଳ୍ପନା ବା ପ୍ରତିନାଦ (echolalia) ନୁହେଁ, ବରଂ ବାସ୍ତବତା ଓ ସାଂଗୀତିକତାର ମିଳିତ ଆକୃତି, ଯେଉଁ ଆକୃତିରେ ସୌନ୍ଦର୍ଯ୍ୟ ଓ ରହିଛି Soul (ପ୍ରାଣ) । ନିସ୍ପ୍ରାଣ ବାକ୍‌ଧାରା ଥୁଣ୍ଟା । କବିତା ସବୁଜ ପତ୍ରାଚ୍ଛାଦିତ ସାହିତ୍ୟର ଗୋଟିଏ ଶାଖା ।

କବିତା ଆଙ୍ଗିକ ସଂଘଟନ ଓ ରଚନା ଶୈଳୀ ବିଶ୍ଳେଷଣ କରିଛନ୍ତି W.P. Ker, ତାଙ୍କ ପୁସ୍ତକ 'Form and style in poetry'! ଗୋଟିଏ ଫ୍ରେଜ୍ ବ୍ୟବହାର କରିଛନ୍ତି 'ପ୍ରିନ୍ସିପୁଲ୍ସ ଅଫ୍ ସାଇକୋଲଜୀ' ପ୍ରଥମ ଭାଗଟିରେ ଉଇଲିୟମ୍ ଜେମ୍ସ, 'ଦି ଷ୍ଟ୍ରୀମ୍ ଅଫ୍ ଥଟ୍', ମୋ କବିତା ମୋ ଭାବନାର ଝରଣା ।

'ଦୃଶ୍ୟ' ଶବ୍ଦରୁ 'ଦର୍ଶନ', କବିତା ଅନ୍ତର୍ଚକ୍ଷୁରେ ଦେଖିଥିବା ଦୃଶ୍ୟର ଚିତ୍ରାୟନ । କବିତା ଚିତ୍ର ନୁହେଁ, 'ଚିତ୍ରାୟନ' ହେତୁ ଏହା 'ଶବ୍ଦଚିତ୍ର' ! ଏଠି ସ୍ମୃତି ସାଇତି ରଖିଛି, A poem is a poem, not a doctrine. It expressess something in the poet's mind or his feeling (Sri Aurobindo) । କେମିତି ଜାଣିବା ଗୋଟିଏ କବିତାକୁ, ଏହା ଉତ୍କୃଷ୍ଟ ? କାବ୍ୟାଚାର୍ଯ୍ୟ ଶ୍ରୀ ଅରବିନ୍ଦ କରିଛନ୍ତି ନିରୂପିତ, Why is a poem fine? By its power of expression and rhythm, I suppose, and its force of

substance and image. As all these are there, I called it a fine poem. ଅଦ୍ୟାବଧି ଏହି ଶୈଳୀର ସୁଷମା କୋଟିକୋଟି କବିତା ପ୍ରେମୀଙ୍କୁ ଉଲ୍ଲସିତ କରି ରଖିଛି । ମୋ କାବ୍ୟିକ ସ୍ଥାପତ୍ୟ ସଂଗଠନରେ ଆଚାର୍ଯ୍ୟଙ୍କ ନିରୂପିତ ଧାରାଟିକୁ ମୁଁ ବଦଳାଇ ନାହିଁ । ଯେଣୁ ବସନ୍ତରତୁର ସବୁ ପିକ ଏକ ପ୍ରକାର କୂଜନରେ ବାଢିଥାନ୍ତି ପ୍ରାଣର ପିପାସା ! ଇଡେନ୍‌ର ଧ୍ୱଂସରୁ ବା ବିପର୍ଯ୍ୟସ୍ତରୁ ତିଆରି ହୋଇଥିଲା ପାରାଡାଇଜ୍ ! ସୃଷ୍ଟି ନିଜେ ଏକ କବିତା, ଲେଖିଛନ୍ତି ଶେଲୀ । କବିତା ଜୀବନ ସହିତ ଥାଏ ଏବଂ ଆଚ୍ଛାଦନଟିକୁ କାଢି ଦେଇ ସୌନ୍ଦର୍ଯ୍ୟକୁ କରିଦିଏ ମୁକୁଳା । ଏହା କବିତାର ଗୁଣ ବା ସ୍ୱଭାବ, ପୋଏଟ୍ରୀ ଟର୍ଣ୍ଣସ୍ ଅଲ୍‌ଥିଙ୍ଗସ୍ ଟୁ ଲଭଲିନେସ୍ । ଶେଲୀ ଗ୍ରହଣ କରିଥିଲେ କବିତା ଏକ କୁହୁକ ଦର୍ପଣ, ତାହା ବିକୃତକୁ ବି କରି ଦେଇଥାଏ ସୁନ୍ଦର । ଏହା କବିତାର ସ୍ୱଭାବ, ଯେଣୁ କବିତା ଆର୍ଟ । ଆର୍ଟ ଆକର୍ଷଣୀୟ ଓ ଲୋଭନୀୟ କରି ହୁଏ ଉପସ୍ଥାପିତ । ନାଂଦନିକ ତୃପ୍ତିପୂର୍ଣ୍ଣ ହେବା କଳାର ଧର୍ମ । ମୁଁ ଭାବେ କବିତା ଏକ କୁହୁକିନୀ, ମଧ୍ୟଯୁଗୀୟା କିମିଆ ଜାଣିଥିବା ମାଲ୍ୟାଣୀ ! ତା' ଶବ୍‌ଦ ମାଲ୍ୟ ସବୁ ମନ୍ତୁରା ! ମୋହନ ମନ୍ତ୍ର ଓ ବଶୀକରଣ ମନ୍ତ୍ର ଚକ୍ଷୁ ବାଟେ ଧାରଣ ମାତ୍ରକେ ଶବ୍‌ଦମାଲ୍ୟ ବିମୁଖ ପୁରୁଷକୁ କରି ଦିଏ ପ୍ରେମିକ ! ପାଠିକା ଜଣକ ହୋଇଯାଏ ନିଜେ ନିଜ କଳ୍ପନାରେ ନାୟିକା ! ମୁଁ ଗ୍ରହଣ କରେ ଶୁକ୍ରଙ୍କ ସଂଜୀବନୀ ମଂତ୍ର ଠାରୁ ମୋ କବିତା କୌଣସି ଗୁଣରେ ନୁହେଁ କମ୍ ! ଶୁକ୍ରଙ୍କ ସଂଜୀବନୀ ଓ ମୋ କବିତା ମଧ୍ୟରେ କାଳଗତ ଅବକ୍ଷୟ ଓ ସମସ୍ତ ବସ୍ତୁର ଅବମୂଲ୍ୟକୁ ପ୍ରଭେଦ ଦୃଷ୍ଟିରୁ ବାଦ ଦେଇ ହେଉ ନାହିଁ !

କବିତା ଏକ କୁହୁକିନୀ, ଏଭର୍ ଆକମ୍ପାନିଡ୍ ଉଇଥ୍ ପ୍ଲେଜର ! ତାହାର ବୃହତମ ଗୋପନୀୟ ଆଚରଣ ହେଲା ଭଲ ପାଇବା ! ଯେଉଁ ଭଲ ପାଇବାର ଘନ ନୀଳ ସମୁଦ୍ରରେ କବି ଚିରକାଳ ବଂଦୀ ହୋଇ ବୁଡି ରହିଥାନ୍ତି ! କଳ୍ପନା ଅପେକ୍ଷା ମୋ କବିତାରେ କଳା ସତ୍ୟ, ସୌନ୍ଦର୍ଯ୍ୟ ସତ୍ୟ ଏବଂ ଆନଂଦ ସଂରକ୍ଷିତ । ସ୍ୱତଃସ୍ଫୂର୍ତ୍ତ ଅନୁଭବ ଶକ୍ତି ଦୀପ୍ତ । ପୋପ୍ ତାଙ୍କ ସମୀକ୍ଷାରେ ରଖିଥିଲେ ପରାମର୍ଶ, ରିଫ୍ଲେକ୍ଟ ନିୟୁ ଗ୍ଲୋରିଜ୍ ! ମହିମା ଓ ସୌନ୍ଦର୍ଯ୍ୟର ସେଇ ନବୀନ ସ୍ୱାଦ ମୋ କବିତାର ପ୍ରତ୍ୟେକଟି ଭଙ୍ଗୀରେ ମହଜୁଦ୍ ।

**ସ୍ୱୀକାରୋକ୍ତି :**

ସ୍ୱୀକାରୋକ୍ତିର ଆଦ୍ୟ ଅର୍ଘ୍ୟ ମୁଁ ନିବେଦିତ କଲି ଔପନ୍ୟାସିକ ଶ୍ରୀଯୁକ୍ତ ନବକିଶୋର ରାଜଙ୍କୁ । ତାଙ୍କ ଶ୍ରଦ୍ଧା ଓ ଭଲ ପାଇବା ନିକଟରେ ମୁଁ ଚିରକାଳ ଋଣୀ । ଏହି କବିତାଗୁଡିକ କୌଣସିଠାରେ ପ୍ରକାଶିତ ହୋଇ ନାହିଁ । ମୋ ସହପାଠୀ ବନ୍ଧୁ ଦର୍ଶନ ଅଧାପକ ପ୍ରଫୁଲ୍ଲ ଚନ୍ଦ୍ର ମିଶ୍ର ଶ୍ରବଣ କରିଛନ୍ତି ପାଖାପାଖି ଦଶଟି କବିତା । ମତ  ଓ ମଂତବ୍ୟ ରଖି ମତେ କରାଇଛନ୍ତି ଆନଂଦିତ । ତାଙ୍କ ପାଇଁ ବାଢୁଛି ଧନ୍ୟବାଦ ।

ପ୍ରିୟ ଗବେଷକ ବନ୍ଧୁ ଡ. ଫଣୀନ୍ଦ୍ର ଭୂଷଣ ନନ୍ଦ ଏକାଧିକ ଥର ପାଣ୍ଡୁଲିପିକୁ ଆମୂଳଚୂଳ କରିଛନ୍ତି ନିରୀକ୍ଷଣ ଏବଂ ତୁରନ୍ତ ପ୍ରକାଶିତ କରାଇବାକୁ କରିଛନ୍ତି ଉତ୍ସାହିତ । ୧୯୮୨ମସିହା ଠାରୁ ପ୍ରକାଶିତ ଅସଂଖ୍ୟ କବିତା ବହି ନ ହୋଇ ରହିଛି । ସେଗୁଡ଼ିକୁ ବହି କରିବାକୁ ବାରମ୍ଵାର ସେ ତାଗିଦ୍ କରିଛନ୍ତି । ତାହାଙ୍କ ଏହି ଶ୍ରଦ୍ଧା ଓ ଭଲ ପାଇବା ନିକଟରେ ମୁଁ ବନ୍ଧା ପଡ଼ିଛି ।

କବିତା କଥା ଭାବିଲା ବେଳକୁ ମୋ ପାଖରେ କବିତାର ଜଣେ ଦେବଦୂତ ଠିଆ ହୁଅନ୍ତି, ସିଏ ଗିରିଜା କୁମାର ବଳୀୟାର ସିଂହ । ମୋ ଛାତିର ସ୍ପଂଦନ ପୁଲକରେ ହୋଇଯାଏ ଦ୍ରୁତ । ତାଙ୍କ ପ୍ରେରଣା ମୋ ପାଇଁ ଅମୂଲ୍ୟ ଓ ମୋ ଚଲାପଥକୁ କରିଛି ବିସ୍ତୃତ । ଏହି ପଦ୍ମ ଫୁଟିବା ବେଳେ ତାଙ୍କ ପାଇଁ ମୋ ହାର୍ଦ୍ଦିକ ଅଭିନଂଦନ ।

୧୯୭୦ ମସିହାରେ ପ୍ରକାଶିତ ହୋଇଥିଲା ମୋ ପ୍ରଥମ କବିତା ଏବଂ ପ୍ରଥମ କବିତାବହି 'ଏବଂ ପୁନରପି' ପ୍ରକାଶ କାଳ ୧୯୮୦ ମସିହା । କବିତା ମୋ ଜନ୍ମ ମାଟି । ପ୍ରବନ୍ଧ ଓ ଉପନ୍ୟାସ ମୋ ଜୀବନ । ଗଳ୍ପରେ କରିଛି ବିଚରଣ । ଶବ୍ଦ ସାଧନାର ବଳୟରେ ମୁଁ ଭେଟିଛି ଅନୁପମ ଏକ ଆଦରଣୀୟା ବ୍ୟକ୍ତିତ୍ୱ, ସିଏ ଦୈନିକ ଧ୍ୱନି ପ୍ରତିଧ୍ୱନିର ସଂପାଦିକା ଶ୍ରୀମତୀ ସୌରିନ୍ଦ୍ରୀ ସାହୁ । ଅକୁଣ୍ଠିତ ଚିତ୍ତରେ ରବିବାର କବିତା ସ୍ତମ୍ଭରେ ମୋ କବିତା ସ୍ଥାନୀତ କରି ଆସିଛନ୍ତି । ତାଙ୍କର ଉଦାରତା ଓ ଶ୍ରଦ୍ଧା ନିକଟରେ ମୁଁ ଋଣୀ ।

ମୋ ଜୀବନକୁ କାବ୍ୟମୟୀ ଔଜଲ୍ୟରେ ସଜୀବ କରି ରଖିଥିବା ତିନିଜଣ ଅଗ୍ରଜ, ଯଥାକ୍ରମେ, କବିବର ପରିଡ଼ା, ରତନକୁମାର ଶିଉଳି ଓ ଲକ୍ଷ୍ମୀଧର ନାୟକ ଆଦିସ୍ୟ ବଂଧୁବରଙ୍କୁ ସମ୍ମାନର ସହିତ କରୁଛି ସ୍ମରଣ ।

ଏକ ପୂର୍ଣ୍ଣମୀ ରାତି । ମୋ ହୃଦୟର ଚଂଦ୍ର, ପ୍ରିୟ ପୌତ୍ର 'ସ୍ୱାଗତ ବୋଧିସତ୍ତ୍ୱ' ହୋଇଗଲା ଅସ୍ତ । ଅକାଳ ବ୍ୟାଧିର ପାପୁଲି ମୋ ହୃଦୟର ଶୀତଳ ଚଂଦନକୁ ନେଲା ପୋଛି । ଅଥଚ ବୃଦ୍ଧ ବୃକ୍ଷ ମୁଁ ବଂଚି ରହିଲି । ସେହି ବଂଚିବାର ଯଂତ୍ରଣା ମତେ କରିଛି ଅଥୟ । ତାହାରି ପ୍ରତିକ୍ରିୟାରେ ଅଙ୍କିତ 'ବୋଧିସତ୍ତ୍ୱ' ସ୍ମୃତି-ଚିତ୍ର । କୁହାଯାଇଛି,Rilke's best poetry is a cry wrung from the deepest recess of the heart ! ଏଲିଜି 'ଏ କ୍ରାଇ', ଏକ ବିଳାପ । 'ପର୍ସନାଲ୍ ସେନ୍ସ ଅଫ୍ ଲସ୍' ତାଙ୍କ 'Duino' ରଚନାର ହେତୁ । ଏଠାରେ ମଧ୍ୟ ସେହି କାରଣ ବିଦ୍ୟମାନ, ମାତ୍ର ଏଗୁଡ଼ିକ କବିତା । ଏହାର ସଂଜ୍ଞା Poetry is a kind of amalgam. It is a type of orchestration at its most complex and a kind of movement at its most simple and sensitive. It is a means to express the deepest thoughts and feelings through words and images. (Contemporary Writers, Page-91-92, by K.N. Sinha)!

ପିକାଶୋଙ୍କ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରବର୍ତ୍ତୀଚିତ୍ର 'to make a new beginning' ପରି ହୁଏତ ଏହା ମୋର ଅଦ୍ୱିତୀୟ ନୂତନ ଆରମ୍ଭ । ଏକ ନିର୍ମଳ ନାଂଦନିକ କର୍ମ । ଏକ ପ୍ରକାର ସୁଫଳପ୍ରଦ ନିର୍ମଳ ବ୍ୟକ୍ତିଗତ ଓ ଆଧାତ୍ମିକ ସିମ୍ବଲିଜିମ୍ ଦ୍ୱାରା ଘଟିଛି ରହସ୍ୟାତ୍ମକ ସୀମା ଉଲଘଂନ ସ୍ଥିତି (Mystical transcedence)! ଶବ୍ଦ ଓ ସମୟ ରହସ୍ୟର ଦୁଇବିଂଦୁ ଅନ୍ତର୍ଜୀବନରେ କେମିତି ମୂରଲୀ ବଜାଉଛନ୍ତି ତାହା ସତ୍ୟ ରୂପେ ହୋଇଛି ପ୍ରଦର୍ଶିତ ।

ଆଗକୁ ମୁଁ ଯାହାଙ୍କୁ ଧନ୍ୟବାଦ ଦେବି ସିଏ ମୋର ପ୍ରିୟ ପତ୍ନୀ 'ସୁଚିତ୍ରା', 'ମହାନାଟକ' ର ପ୍ରସିଦ୍ଧ ପଂକ୍ତି, 'ସା ପ୍ରିୟା ମେ' । ସୁଦୀର୍ଘ ଅଠତିରିଶ ବର୍ଷ ବ୍ୟାପି ମୋ ସହିତ ମୋର ଏଇ ସାହିତ୍ୟ ଯିଦ୍‌କୁ ନୀରବରେ ସମର୍ଥନ ଓ ସହାୟତା କରି ସଂସାର ତରଣୀଟିକୁ ତାହାର ଲକ୍ଷ୍ୟ ଦିଗରେ ନେଇ ଚାଲିଛନ୍ତି । ତାଙ୍କ ତ୍ୟାଗ ଅମାପ । ତାଙ୍କର ସହଧର୍ମିଣୀ ସ୍ୱଭାବ ମତେ କରିଛି ଧନ୍ୟ । କବିତାର ପ୍ରେରଣା ପ୍ରେମିକା Narcissus ହେବା ବେଳେ ପତ୍ନୀ Holy Real ! ଯେଉଁଠି ପୁରୁଷର ଭଲ ପାଇବା ଚିରକାଳ ନିଦା ଓ ପବିତ୍ର ଦାଂପତ୍ୟପୂର୍ଣ୍ଣ ।

୨୦୦୫ରୁ ସୁଦୀର୍ଘ ୧୪ବର୍ଷ ବ୍ୟାପି ମୋ ସହିତ ବନ୍ଧୁ ସୂତ୍ରରେ ଆବଦ୍ଧ କବି ଭିକାରୀ ଧଳ । ତାଙ୍କ ପ୍ରେରଣା, ଆଗ୍ରହ ଓ ପ୍ରକାଶନ ଦାୟିତ୍ୱ ଗ୍ରହଣ ମତେ କରିଛି ଉତ୍ସାହିତ । ତାଙ୍କ ପାଇଁ ମୋ ସାଧୁବାଦ ଅନେକ ଅନେକ ।

ନମସ୍କାର

ଶବ୍ଦ ଘର, ଗୋଡିସାହି
କଟକ-୭୫୪୦୦୬

ନକୁଳ ଚଂଦ୍ର ସାହୁ

## କବିତା କ୍ରମ....

# ଦିଗ୍‌ବଧୂ

ପ୍ରତ୍ୟେକ ଥର ଦେହର ପ୍ରକୋଷ୍ଠରୁ ବାହାରି
ମୁଁ ଚାଲି ଆସୁଛି ମଳୟର ବଗିଚାକୁ
ଧୈର୍ଯ୍ୟର ସହିତ ମୁଁ ଉନ୍ମୋଚିତ କରୁଚି
ଉନ୍ନୀତ ପରିବେଶର ଜଡ ଜୀବନକୁ

ତମେ ରତ ସଂଜାତ କିଂଶୁକ ବର୍ଣ୍ଣର ହଂସ
ନିଷ୍କଳୁଷ ବିସ୍ମୟ ଓ ଅରୁଣ ରଂଗର ବାକ୍
ପ୍ରକୃତିର ବଂଦୀଶାଳାରୁ ମୁକୁଳି ଆସିଥିବା ଉଷା
ସୃଷ୍ଟିର ତମେ ପ୍ରଥମ ଆଲୋକ, ଅମୃତର ଶେଷ ପର୍ବ ।

ସୋପାନମାନ ମର୍ମତଃ ମୃତ, ଶକ୍ତି ଅସୁସ୍ଥ
ଅବତୀର୍ଣ୍ଣ ଭାବନା ଡାଳାରେ ସଜ୍ଜା କଂଚା ପରିବା
ସମ୍ପୂର୍ତ୍ତତା ନୂଆ ସ୍ପଂଦନର ନିଆରା ସତ୍ତା
କରୁଛି ଉଦ୍‌ବୋଧିତ, କହୁଛି ତମ କଥା, ତମ ଆସିବା କଥା ।

ଅବିଦ୍ୟାର ଅନ୍ଧ ଅନ୍ଧକାର ଏଥର ଯିବ;
ପଥ ଓଗାଳି ବସିଥିବା ପଥର ଘୁଂଚିବ
ମନର କର୍ତ୍ତୃତ୍ୱକୁ ପରିପୂର୍ଣ୍ଣତା ସ୍ଥାୟୀ ଠିକଣାଟିଏ ଦେବ
କେମିତି ଏମିତି ସ୍ୱକୀୟ ରୀତିଟିଏ ପ୍ରବଣ ହେବ;

ଯେଣୁ ସୂର୍ଯ୍ୟ ଦ୍ୱାରା ତୁମେ ଅନୁରଂଜିତା ।
ବାକ୍‌ର ମୁକୁଳା ପ୍ରବାହରେ ତୁମେ ଝୁଲନ୍ତା
ଚାରିଆଡ ଉଜ୍ଜ୍ୱଳ, କିଂଶୁକର ଲାଲିମା
ସତ୍ୟର ଉଦ୍‌ଭାସ, ପ୍ରେମମୟ ଅବତରଣର ଆଭାସ ।
□□

# ତୁମେ

ଏକ କ୍ରିୟାରହିତ ଅବସ୍ଥାର ରୂପ ନୈଃଶବ୍ଦ୍ୟ
ଏକ ଦିବ୍ୟକର୍ମର ସ୍ୱାତନ୍ତ୍ର୍ୟ
ଆତ୍ମଶକ୍ତି, ଅନନ୍ତ ସାମର୍ଥ୍ୟରେ ପରିପୂର୍ଣ୍ଣ ।

'ନୈଃଶବ୍ଦ୍ୟ' ବ୍ରହ୍ମର ପରମ ପ୍ରଶାନ୍ତି,
ନୈଷ୍କର୍ମ୍ୟର ଆତ୍ମ ପରିଚୟ, ସ୍ୱଚ୍ଛନ୍ଦ ପୁଲକ;
ନୈଃଶବ୍ଦରୁ ହେଉଥାଏ ସଂଚାରିତ ଅସୀମ ସୁଷମା
କର୍ମ ନିବୃତ୍ତ ହୋଇଥାଏ ଚେତନାର କଳ୍ପନା ।

ସମନ୍ୱିତ ଅବସ୍ଥା
'ମୁଁ' କେବଳ 'ମୁଁ'
'ତୁମର' ଅନୁମୋଦନ 'ତୁମରି' ରୂପାୟନ
'ସତ୍'ର ବିକଳ୍ପନା, 'ନିର୍ବିଶେଷ' ଛଳଛଳ

'ତୁମେ' କେବଳ 'ତୁମେ', ପରମାର୍ଥ ସତ୍ ।
ନିଜ ଅନ୍ତର୍ଗତ ଚେତନାରେ ନୈର୍ବ୍ୟକ୍ତିକ 'ତୁମେ'
ସବୁଠି 'ମୁଁ', 'ମୋର'; ଅଥଚ
ନୈଃଶବ୍ଦ୍ୟ ଭିତରୁ ସୃଷ୍ଟିକ୍ରିୟାର ଲୀଳା ସ୍ଫୁରିତ ।

'ମୁଁ' ବହିର୍ଜଗତ, ବ୍ୟବହାରିକ, ଲିପ୍ତ ।
ଅଥଚ 'ତୁମେ' ସବୁ ହେଲେ ବି ଅନୁଲିପ୍ତତାରୁ ମୁକ୍ତ,
ପରିପୂର୍ଣ୍ଣ, ସଂପୂର୍ଣ୍ଣ, ଚିରନ୍ତନ
ଜୀବନର ଜୀବନ ଓ ପ୍ରେମର ପ୍ରେମ ।
□□

# ମୁଁ

'ମୁଁ' ଯାହାର ସ୍ଥୁଳ ଦେହ ସିଏ ଭାବ ରସରେ ଉନ୍ମାଦ
ବିପୁଳ ଇଚ୍ଛାଶକ୍ତି, ସୁପ୍ରତିଷ୍ଠିତ କାମ ଶକ୍ତି ଓ ବାକ୍‌ଶକ୍ତି
ଅତଳକୁ ତାର ପରି ମୋଡିମୋଡି ହୋଇ ଓହ୍ଲାଇଛନ୍ତି
ଉପଲବ୍ଧି ଓ ଐକ୍ୟର କୋମଳତା।

ଅପ୍ରତିରୋଧ୍ୟ ଓ ଅମୋଘ ଗଙ୍ଗାର ଝଙ୍କାର
ତା'କର୍ମସୂଚୀ ଓ କର୍ମ ପଦ୍ଧତି ଚିରିଦିଏ ଅବଲୀଳା
ଫର୍ଦ୍ଦଫର୍ଦ୍ଦ ଚିରିଯାଏ ଜୀବନର ଚିଠି, ଜନ୍ମ ଜନ୍ମ ବ୍ୟାପି
ଠିକଣା କ'ଣ ଡାକବାଲା ଜାଣିଛି ?

ସନାତନ ଅଦୃଶ୍ୟ କାଳିରେ ଚିଠି ଲେଖିଚି।
□□

# ଦେହ

କେତେ ଗେରୁଆ ଏଇ ପ୍ରତିଭାସିତ
ସଫଳ ବିନାଶଶୀଳ
ମାୟା ରଚିତ ବିରାଟ କୁହୁକ
ବସନ୍ତ ରାତିର ଜନ୍ମ ଓ ପୁନର୍ଜନ୍ମ ।

କାହିଁକି ଏମିତି ହେଲା ପ୍ରତିଭାତ
ତମର ରୂପାୟନ ରୂପର ଅପରିହାର୍ଯ୍ୟ ସତ୍ୟ,
ଆତ୍ମ ଅବିଷ୍କାର ପାଇଁ ବାଟ ଓଠ ଯୋଡିକ
ଦେହ ଅସ୍ତିତ୍ୱର ଅମୃତ ବନ ଦ୍ୱାରର କବାଟ ।

ସୌନ୍ଦର୍ଯ୍ୟ ଚିର ବର୍ତ୍ତମାନର ଉନ୍ମେଷ
କସ୍ତୁରୀପରି ଗେରୁଆ ଭୂମିଟି ରଚନା କରିଛି,
ଚାରିଆଡ କିଂଶୁକ ପାଖୁଡା ବିଛା ସଘନ
ଅନିରୂପିତ ଓ ଅସ୍ପଷ୍ଟ ନୀଳମେଘଙ୍କ ସଂଚାର ।

ବସନ୍ତ ଓ କେବଳ ବସନ୍ତ, ମହୁର ଅକ୍ଷାଂଶ
ଡୋଳା ଦୁଇଟି ଢଳ ଢଳ ନବମେଘ;
କ'ଣ କହିବ-କହିବ, ନିଜର ଉଦ୍‌ଘାଟନ;
ଅଥବା ପ୍ରବୃତ୍ତିର ବଗିଚାରେ ପ୍ରକୃତିର ହସ୍ତାକ୍ଷର ।

ଉନ୍ମୁକ୍ତ ନୂତନ ପରିସର ?

ଆନଂଦର ଝରକା ଫିଟି ଗଲା
ତୃଷ୍ଣା ଓ ଅପ୍ରାପ୍ତିର ଦରଜା କିଂତୁ ବଂଦ ଥିଲା
ନିଃସାର ନିର୍ବୋଧତା ବିଷୟର କୁହୁଡିରେ ଭିଜୁଥିଲା ।
□□

## ମନ

ମନ କ'ଣ କରୁଛି
ଯେମିତି ପୁଅ ଜଣେ କରୁଥାଏ କିଛି,
ମନ ନୂତନ ଭାବେ ସଜାଉଛି ଜଡ ଶକ୍ତିର ପ୍ରକ୍ରିୟା,
ଯେମିତି କେହି
ଭଙ୍ଗା କାଚମାନଙ୍କୁ ସଜାଇ ଗଢୁଚି ତାଜମହଲ।

ପ୍ରଥମ ପର୍ଯ୍ୟାୟ ଭୂମିଲଗ୍ନ ଜୀବନହୀନ
ଅଥଚ ଅନିବାର୍ଯ୍ୟ ଓ ସୁବ୍ୟବସ୍ଥିତ,
ଦ୍ୱିତୀୟ କ୍ଷେତ୍ରର କ୍ରିୟାରୂପ ନିଶ୍ଚୟ
ପୃଥକ୍ ପ୍ରବୃତ୍ତିଯୁକ୍ତ ଦ୍ୱିତୀୟଟିର ପରିଣାମ।

ତୃତୀୟ ଭାଗ ଯଥାଯୋଗ୍ୟ, ରୂପ ସତ୍ତା ପାଇଁ
ଗତି ସ୍ପଂଦନ ଓ ପ୍ରୟୋଜନ,
ସୃଷ୍ଟିଟି ଯେ କେମିତି ହେବ ମୂଳ ଭୂମିରୁ ବିଚ୍ଛିନ୍ନ;
ଚତୁର୍ଥ ଭାଗ ବହୁ ମୋଡର ମିଳିତ ଛକ : ବେକ।

ମନର ପଞ୍ଚମଭାଗ ସତ୍ୟର ସଂକଳ୍ପ ଓ ରୂପତତ୍ତ୍ୱ
ତମକୁ ଚିହ୍ନିବା ପାଇଁ ନ ଥିବା ଅଭିନ୍ନତା
ତମକୁ ମୁଁ ଚିହ୍ନି ଗଲି କବିତା, ଖଣ୍ଡ ସମୂହର ଆତ୍ମା;
ତମେ ଅନୁପମା ଏକ ଆକୃତି, ଶକ୍ତିର ନିଜ ଚିତ୍ର

ସ୍ୱୟଂ ଅଧୀଶ୍ୱର ମଣିଷର ମୁଖ।

□□

ମନ, ସୁମନ, ବିମନ, କୁମନ ଓ ଅମନ = ପଞ୍ଚସୋପାନ : ପଞ୍ଚଭୂତାତ୍ମା

# ପ୍ରେମ

ଯେମିତି ପ୍ରେମମୟୀ କମଳା ରଙ୍ଗର ପ୍ରଜାପତିଟିଏ
ଅମୁହାଁ ଅସମ୍ଭବତା ଭିତରୁ ଉଡି ଆସିଛି
ମୀମାଂସାହୀନ ସମଧର୍ମୀତା ଜାଲ ଭିତରକୁ
ଏକ ତତ୍ୱକୁ ସୂତ୍ରରେ ସିଦ୍ଧି ରୂପ ଦେବାକୁ ।

ତୁମେ ପ୍ରାଣ ସତ୍ତାର ଡାଳରେ ବସି
ସର୍ବମୟ ମିଠା ଫଳଟିକି ଥରେ ଅନାଇ ଦେଖିଚ
ଆତ୍ମ-ସତ୍ତାର ରଙ୍ଗ ମୌଳିକ, ହେ ଅଭୁକ୍ତାପକ୍ଷୀ
ଭୋଜନ ନ କରି ବି
ଭୋଜନ ସୁଖର ସତ୍ତା ତୁମର ସୁନ୍ଦର ଦିଶୁଛି ।

ଆହୁରି ଅଧିକ କିଛି ରତାୟନୀ ଦେବ ବୋଲି କହୁଛି
କ୍ରିୟାଶୀଳତାର ବୈଚିତ୍ର୍ୟ
ବୈଚିତ୍ର୍ୟ ତ ରଶ୍ମିମୟ; ଆଶାର ରଶ୍ମି
ଜ୍ଞାତା ଓ ଅଜ୍ଞାତା, ଦୁହେଁ ଜନ୍ମ ରହିତ, ଅଥଚ ଜାତ ।
ତମକୁ ମୁଁ ଚିହ୍ନିଲି, ଶିଶୁଂ ଇଜ୍ଜତୁର୍ବର୍ଦ୍ଧୟନ୍ତୀ,
ବିସୃଷ୍ଟିର ଚିତ୍ରପଟ୍ଟ
ତୁମ ସହିତ ମୁଁ ଏକାତ୍ମ୍ୟ ଓ ବିଭୋର
କିଂତୁ ମଧୁଫଳର ମାଧୁର୍ଯ୍ୟରେ ଅଭିଭୂତ ଓ ତଲ୍ଲୀନ ।
ସର୍ବବିଧ ସ୍ଥିତି ମତେ ବାନ୍ଧି ଧରିଛି
ବଚନୀୟ ଶାନ୍ତି ଓ ଶକ୍ତିର ପକ୍ଷୀ ଉଡି ଯାଇଛନ୍ତି
କାଳ ରହିତ ଶାଶ୍ୱତ ପ୍ରେମର ଭୂମି
ଗୋଲାପଟିଏ ଫୁଟିଛି, ଭାବରେ ଅନୁପ୍ଲାବିତ ।

ଆକାଶ ସର୍ବଭକ୍ଷୀ, ଅପ୍ରତିଦ୍ୱଂଦ୍ୱୀ
ମୋ ସବୁ ସ୍ପଂଦନକୁ ଭୋଜନ କରୁଛି, ଯାହାକୁ ମୁଁ
ଭୁଂଜି ପାରିଲିନି;
ଯେଣୁ ଈଶ୍ୱର ନିଜେ ମଧୁଜାଲରେ ଛଂଦି ହୋଇଛନ୍ତି
ଏବଂ ଏଇଥିପାଇଁ ଥରକୁ ଥର ଏଠାକୁ ଆସନ୍ତି ।

ଆସ,
ଦୁଃଖର ନାଭି ଛେଦନ ପରେ
ସିଦ୍ଧାନ୍ତଟିକୁ
ଶିଶୁପରି ପାଳିବା । ବ୍ରହ୍ମ ଅମୃତକୁ ଭୋଗିବା ।
□□

# ନୀଳହଂସ

ନୈଷ୍କର୍ମ୍ୟ ଓ ନୈଶବ୍ଦ୍ୟ, ମାର୍ଗ ଦୁଇଟି
ଭିତରେ ପହଂଚିବାକୁ ବାହାରିଛି
କିଂତୁ ଏତେ ଗମ୍ଭୀର
ମନର ଡେଣା ଦୁଇଟି କଟି ଯାଇଛି ।

ଚିନ୍ମୟ ଆତ୍ମସତ୍ତାକୁ ମୃତ୍ୟୁର ଦୁଃଖ
ମୋହର ଡୋରରେ ବାନ୍ଧି ସତ୍ୟକୁ ଅନ୍ଧୁଆରେ ପକାଇଛି
ଜୀବନର ଗ୍ରନ୍ଥିମାନ ଶିଥିଳ
ଯାବତୀୟ ଅବିଚ୍ଛେଦ୍ୟ ସମସ୍ୟାର ଅନ୍ଧସତ୍ତା ବଳବାନ

କେତେ ନିର୍ମ୍ମମ ଏ ସବୁ, ସଘନ ସବୁଜହୀନ
ବିଷୟୀ ବେଦନା ଓ ତା' ଆତ୍ମ ପ୍ରସାରଣ
ଅନୁଭବର ଯୂପରେ ବନ୍ଧା ବଳିଟି କି ବିକଳ
ଶୁଦ୍ଧ ଓ ଆଧ୍ୟାତ୍ମିକ : କାହିଁ ସେ ଅସ୍ତିତ୍ୱର ଶ୍ୱେତକପୋତ ?

କାହିଁ ସେ ମୂଳ ଭିତ୍ତିର ନୀଳହଂସ ?
□□

# ଅଂତର୍ଗୂଢ

ମିନତି ସହ ମୋ' ସତ୍ତା
ଅପ୍ରତିହତ, ସର୍ବାଙ୍ଗ ଚେତନା
ଫୁଟି ଉଠେ ମହାରାତ୍ରୀର ମହିମା !

ଜ୍ୟୋତିର୍ମୟ ମୃତ୍ୟୁର ସଂଚାର ହୁଏ
ଦେହର ନୀଳଫର୍ଦ୍ଦରେ ଓ ନୀଳ ପଦ୍ମରେ
ଗହନ ଓ ନିସ୍ତ୍ରଭ ଲାଗେ ଅତରଳ ପରିବେଶ
ବେଦଗର୍ଭା ଦିବ୍ୟମୂର୍ତ୍ତି ରୋଧେ ଗତି ପଥ !

ଦୀପ୍ତ ଦ୍ୱାର, ଦରଜା ମୁକୁଳା
ରାତ୍ରୀର କବରୀପରି ଭାସ୍ୱର ଶୋଭନା
ଦୁଃଖର ନିଳୟରେ ବାତାୟନ ଟପି
ପହଂଚିଛି ବିରଳ ଅତିଥି, ପହଂଚିଛି !

ଛଦ୍ମବେଶୀ ବିପୁଳା ସେ ଭୂମା
ଉଦାସ ବିଶାଳ ଅତୃପ୍ତ ଅତୀତକୁ କରି ଶୂନ୍ୟ
ଏକାକିନୀ ଠିଆ ହୁଏ ମୋହିନୀ ମହାବାଣୀ
ସତ୍ୟବାନ, ଉଠ ! କାଳାତୀତର ଏହା ସନ୍ଧିକ୍ଷଣ

ମର୍ତ୍ତ୍ୟଲୋକରୁ ଲିଭୁ ମୁହୂର୍ତ୍ତର ପ୍ରେରଣା
ଭବିଷ୍ୟତରେ ଆବୃତ୍ତ ମୁଖ ଗତାନୁଗତିକ
ସାନ୍ନିଧ ଶକ୍ତିର ଏହି ପ୍ରାଣଧାରା
ରୂପକଳ୍ପରେ ସଂଦିଗ୍ଧ ଅନ୍ତର୍ବର୍ତ୍ତୀ ଚିତ୍ର
ଲୀଳାୟିତ ହେ ଅତିଥି ପୋଛିଦିଅ, ପୋଛିଦିଅ ଏହି ବହୁମୁଖୀ ରାଙ୍କୁଡି
ବ୍ୟାପକ ହେଉ ଛନ୍ଦମୁକ୍ତ ସଂପର୍କର ଶୁଭ୍ରଜ୍ୟୋତି !
□□

# ଧଗଦ୍ଧଗଦ୍ଧଗଦ୍ଧ୍ୱଳ

ଦୀର୍ଘପଥ ଅତିବାହିତ
ଅନଧିଗମ୍ୟ ଅତୀତର ବିଦ୍ୟା ଭୂମିରେ
ତୁମର ପ୍ରତିଭାସ
ତୁମ ଲୀଳାର ଆତ୍ମସମ୍ବିତ୍ ଅଧିବାସିତ

ତୁମେ ?
ସମ୍ବନ୍ଧର ବିଳାସରେ ଆନନ୍ଦର ଅନ୍ତର୍ଛଂଦ
ନିର୍ମୁକ୍ତ ସାମର୍ଥ୍ୟ
ଏବେ ସବୁ ସଂକୁଚିତ, ଋତୁମାସ ଓ ଆୟୁଷ
ମହାଶକ୍ତିଶାଳୀ ଅନ୍ତଃପୁରୁଷ
ସୁଶୃଂଙ୍ଖଳ ଦୃଶ୍ୟମାନ ବାସ୍ତବତା
ପବିତ୍ରର ଜୟଗାନରେ ନିମଜ୍ଜିତ ଗତି ସତ୍ତା
ସ୍ୱୈର୍ଯ୍ୟ କରେ ପ୍ରତିଷ୍ଠା

ପୁରୁଣା ଜନ୍ମଟା ଏବେ କଳୁଷିତ
ଦୁଃଖରୁ ମୁକ୍ତ ହେବ ଆବାସ
ବେସୁରା ଅନ୍ତରଙ୍ଗ ସତ୍ତା ଅପ୍ରାପ୍ତିର ଅନ୍ତିମ ଅବସ୍ଥା
ପରାଜୟର ଏକ ଆଲୋକିତ ଅମାବାସ୍ୟା

ଦୀପ ଲଗାଉଛି
ପାଚିଲା ବରପତ୍ର ଦୁଇଟି । ପବନ ନାଚୁଛି
ସଂଶୋଧନ କର ଭିତ୍ତି, ସର୍ତ୍ତ ଓ ଅବଶୋଷକୁ
ପ୍ରାଣ ଭୂମିରେ ଦର୍ଶନ ମିଳିବ କୃଷ୍ଣ ଓ କାଳୀଙ୍କୁ ।।
□□

# ଯୋଡିଏ ପଦାବ୍ଜ

ଅତୀତ ସମାପ୍ତ
ଅତୀତ ମୃତ, ନୂଆ ଜୀବନର ରଶ୍ମି
ଅତୀତକୁ ଦାହ କରି ସତ୍କାର କରୁଛି !

ମୁଁ
ସେଲ୍‌ଫିସ୍, ସୀମିତ ଅରାଏ,
ଅନୁଭବ ଭାବନାରେ ସେନ୍‌ସେସନ୍‌କୁ ଚିହ୍ନାଏ !

ଉତ୍ସାହର ପ୍ରବାହ, ଶକ୍ତିର ପୁଷ୍ପ, ଅସୀମର ଆଲୋକ
ଆନନ୍ଦକୁ କରେ ପୂର୍ଣ୍ଣତା ପ୍ରଦାନ
ଠିଆ ହୁଏ ଭାବନା !

ଘୋର ନିଃଶବ୍ଦତା
ପ୍ରଶାନ୍ତିର ଉଲ୍ଲସିତ ବଗିଚା
ଶିଖାୟିତ କୃତଜ୍ଞତା
ସ୍ୱର୍ଗୀୟ ସୁଖର ଛଂଦାଛଂଦି ରେଖା;

'ମୁଁ' କାହିଁ ?
ଓନ୍‌ଲୀ ଲଭ୍, ଯୋଡିଏ ପଦାବ୍ଜ
ଗୋଟିଏ ଜାଗ୍ରତ ବିଦ୍ୟୁତର ତେଜ
'ଦାଉ'...ତୁମେ, ତୁମେ !

ମୁଁ ବୁଡିଲି, ବୁଡିଲି
ଆଃ ! ତୁମ ହାତ ମୁଠରେ ମୋ କଟଟି
ଫିକା ହୋଇଯାଉଛି ମିଥ୍ୟାର ରାତିଟି !

□□

ବି.ଦ୍ର : ('ଦାଉ', ତୁମେ)

# ବାସ୍ନାର ପ୍ରହର

ଚୈତନ୍ୟର ସମସ୍ତ ଦ୍ୱାର ଦେଇ ଜୀବନ ଦେଖୁଚି
ପ୍ରେମର ବୃହତ୍ତର ଫ୍ରେମ୍‌ମାନଙ୍କୁ
ବଂଚିବା ଓ ଭଲ ପାଇବା ଅସୀମର ଆଖି ଦୁଇଟି
ମାତ୍ର ଗୋଟିଏ ଦୃଷ୍ଟି । ଦ୍ରଷ୍ଟା ଉଲ୍ଲାସ, ନିଜେ ଶାଶ୍ୱତ ।

ଜୀବନ ଦେଖୁଚି ମୁହୂର୍ତ୍ତମାନେ କେମିତି ଅତିକ୍ରମ କରୁଛନ୍ତି
ସମୟ ଜନ୍ମ ନେଉଛି ଏବଂ ବିକାଶ ଲଭୁଚି
ନିଜର ସୂର୍ଯ୍ୟାସ୍ତ
ଅନାଚ୍ଛାଦିତ ଭଲ ପାଇବାର ଅବୟବ
ଯେମିତି ଈଶ୍ୱରଙ୍କ ଲଙ୍ଗଳା ଅଙ୍ଗ, ଅନାକାଂକ୍ଷିତ ଉପସ୍ଥିତ ।

ଜଟିଳପଥ, ନିଃସଙ୍ଗ । ଯେମିତି ମଣିଷର ଅତୀତ
ଆନଂଦ ଉପସ୍ଥିତ ଅନାମିତ ଜଣେ ଈଶ୍ୱରଙ୍କ ରୂପ ?
କାନ୍ଥ ଆରପଟେ ବଖରା, ବଖରା ଭିତରେ କଳ୍ପନା ରଥ
ଯେମିତି ନଂଦିଘୋଷ ଅନ୍ତର୍ବାୟୁ ଡେଣା ଉନ୍ମୁକ୍ତ ।

ଅଦେଖା ଆନଂଦ ଅରାଏ ତମ ରୁମାଲ ଭିତରେ
ଆତ୍ମାର ବିଶୁଦ୍ଧ ବାସ୍ନା । ହାତ ବୁଣା ଗୋଲାପ ଗୋଟିଏ
ଗୋଟିଏ କୋଣରେ ତଳକୁ ଅନ୍‌ଆପ୍ରୋଚେବ୍‌ଲୁ ଗୋଟିଏ ଅକ୍ଷର
ସେଲ୍‌ଫ୍‌କ୍ରିଏସନ୍ । ସମୟ ଅସୀମ, 'ତମେ' ।

ମୁଁ ବଡୀ ଅଫ୍ ଟ୍ରୁଥ୍,
ଅଛି, ବ୍ୟବସ୍ଥାର ବିଧାନ ଭିତରେ
ଭଲ ପାଇବାର ଧଳା ସମାଧିରେ; ମୁଁ ଅଛି ।
ଭାଗ୍ୟ ଓ ମୃତ୍ୟୁ ନିଶ୍ଚୟ ଫେରିବେ ପାଖ ପାର୍କକୁ,
ଅଦେଖା ଷ୍ଟେଲ୍ ସମୟ ଜୀବଟିଏ, ଜୀଇଛି
ପ୍ରବୃତ୍ତି ନିମଂତ୍ରଣ କରିଛି ନିମ୍ନ ପ୍ରକୃତିକୁ, ଉଦ୍ଦୀପନା ଫୁଟୁଚି ।
□□

# ପ୍ରଶ୍ନ ପତ୍ରଗୁଚ୍ଛ

ପ୍ରଜ୍ଞା ଓ ଆକାଂକ୍ଷାଦ୍ୱାରା ସର୍ବୋତ୍କୃଷ୍ଟଭାବ
ଶେଷ ପର୍ଯ୍ୟନ୍ତ ଜୀବନ୍ମୟ ସତ୍ତାରେ ରହିବ ଅବିଚ୍ଛିନ୍ନ
ଓ ପ୍ରାଣମୟ ଯେମିତି ଗୋଟିଏ ସମ୍ମତି
ମନୋରୀତିକୁ ଦିଏ ଅନୁଶୀଳନ ସ୍ୱୀକୃତି ।

ଆପଣାର ମୁକ୍ତ ଭାବ ବୁଦ୍ଧି ସମ୍ପନ୍ନ ଓ ସ୍ୱାଧୀନ
ଭାବନା ଓ ଅନ୍ତର୍ଜୀବନ ଅନ୍ତହୀନ ଓ ସୁସମ୍ପନ୍ନ
ଛଂଦମୟ ତୁମର ଗତି ସ୍ପଂଦନ, ମେଘମୟ ତୁମ ଡୋଳା ଯୁଗଳ
ମସ୍ତିଷ୍କ ଶକ୍ତିରେ ତୁମ ଆଖି ଜୀବନକୁ କଲା ଅବଲୋକନ ।

ବୃହତ୍ତର ଚିଦ୍‌ଗତ ଭୂମି ବହୁବିଧ ଅଗ୍ରସର ପୂର୍ଣ୍ଣ,
ତୁମକୁ ଚାଲି ଯିବାକୁ ହେବ ? ଯାଅ, ତୁମେ ସ୍ୱାର୍ଥଗୁଡ଼ିକ ସହିତ
ବିସମ୍ବାଦ ସହିତ ଶାନ୍ତି ଚୁକ୍ତି କରିଛି ସିଦ୍ଧାନ୍ତ ଓ କ୍ରିୟାପଦ
ଉତ୍‌ପ୍ରେରଣା ସମର୍ଥନ କରିଛି, ଆବେଗ ପ୍ରାଣଗତ ।
ଜୀବନ ସାମାଜିକ ।

ପରିବାର ଜୀବନର କ୍ରିୟା ରୀତି ବ୍ୟବହାରିକ
ପ୍ରଚଳିତ ଛାଂଚରେ ତୁମ ଜୀବନ-ବିଜ୍ଞାନ ହେଲା ପ୍ରତିଷ୍ଠିତ
ଅନ୍ତର୍ଗତ ତାତ୍ପର୍ଯ୍ୟ ଓ ସତ୍ୟ ତୁମ ଆତ୍ମାରୁ ଉଦ୍‌ଭୂତ
ଉପଯୁକ୍ତ ସୌନ୍ଦର୍ଯ୍ୟରେ ବଂଚିବାର ଉପାଦାନମାନଙ୍କୁ କରିଛି ସ୍ୱଚ୍ଛ ।।

ବିକାଶ ଇତିହାସର ଧାରା । ତୁମ ସ୍ୱପ୍ନର ପୁଷ୍ପସବୁ ବିକଶିତ
ଛଳନାହୀନ ତୁମ ସମସ୍ତ ନୈପୁଣ୍ୟ ? ପ୍ରାଣ ଦର୍ପିତ ତୁମ ଇଚ୍ଛା
ଓ ବଂଚିବାର କନକ କପୋତ । ତୁମେ ପୂର୍ଣ୍ଣ ସନ୍ତୁଷ୍ଟ ? ?
ଉପାଦନମାନଙ୍କ ନିବିଡ ସଂସ୍ପର୍ଶ ତୁମକୁ ଲାଗିଚି ପବିତ୍ର ?

ସାମାଜିକ ଧାରାର ସୌନ୍ଦର୍ଯ୍ୟ ଗତାନୁଗତିକ ।
ବିଷୟମାନଙ୍କ ଭିତର ଓ ବାହାର ଏକ । ତଥ୍ୟ ଜୀବନ୍ତ ।


# ନିତ୍ୟ ସମାପ୍ତ

ପୂର୍ଣ୍ଣ ଉଜାଗର ଏକ ଆଲୋକର ଅଙ୍ଗ ପ୍ରତ୍ୟଙ୍ଗ
ନୂଆ ଲୁଗାପରି ଭାଙ୍ଗ ହୋଇ ରହିଛି ଉଲ୍ଲାସ
ଦୃତ ବାୟୁ ଯେମିତି ମନ ଭିତରୁ ବୋହି ଆସୁଛି
ତା'ର ଗୋପନୀୟ ପଦପାତ ବଡ ଚୁପ୍‌ଚାପ୍ ।

ଗୋପନ ଚୁମ୍ବନର ଡେଣା ଶବ୍ଦ ଦ୍ୱରିତ ପ୍ରସାରିତ
ଏବଂ ଫିଟୁଚି ଯେମିତି ଖଣ୍ଡେ ଫୋଲଡିଂ ଛତା
ନା ଶୁଦ୍ଧତମ ଭାବେ ବେଆଡା ମଲ୍ଲିକାର ସ୍ମିତ
ଏତେ ବେଆଡା ନ ହେଲେ ଫୁଟେ ନାହିଁ କିଂଶୁକ
ଦେହି ପଦ ପଲ୍ଲବମ୍ କହିପାରେ ନାହିଁ ଲେଖିନୀ ମୋ ।

ପ୍ରେମ ତ ସ୍ୱପ୍ନଟିଏ, ଯାହାର ଲକ୍ଷ୍ୟ ଜନ୍ମ, ପୁନରପି
ମନର ଋତୁ, ସ୍ନାୟୁର ପ୍ରଶ୍ୱାସ ଓ ସୁବର୍ଣ୍ଣ ନିଶ୍ୱାସ
ସବୁଠି ଚେତନାର ସେଇ ଗୋଲାପୀ ଡେଣା
ସୌନ୍ଦର୍ଯ୍ୟର ଓଠକୁ ଚିରି ଫୁଟାଏ ହସ !

ଶିଖା କରେ ପ୍ରଶ୍ନ, ଆଖି ବହନ କରେ ଦାବୀ
ଭୁଲି ଯିବା ଦିଏ ଉତ୍ତର
ଏକମାତ୍ର, ଏକମାତ୍ର ପର୍‌ଫେକ୍ସନ୍ ଅଫ୍ ସିଂପ୍ଳୁ
ଅପହଂଚ ସୌନ୍ଦର୍ଯ୍ୟ, ଅଚିହ୍ନା ଇମେଜ୍
ସିମ୍ଫଲର ଓଢଣୀ ଭିତରେ ଅବଗୁଣ୍ଠିତା ନବନୀତା କହେ କଥା !

ଜହ୍ନ ତ ସୁସ୍ପଷ୍ଟ ପ୍ରକାଶିତ 'ଏବଂ'ର ଝରଣା
ସାରା ଆକାଶ ପ୍ରବାହିତ ଅମୃତବରନା
ନିର୍ମଳ ଉପାସନା ତୁମେ ଆଉ ଯୋଜନା
ଖୋଜନାରେ ସୀମିତ ଅପହଂଚ
ଅମୃତର ଅର୍ଜ୍ଜନ ବଡ ବିଡମ୍ବନା ।
□□

# ଅଗ୍ନିପୁଷ୍ପ

କାହାର ଏ ଆଂଗୁଠି
ସ୍ପଷ୍ଟତର ଭାବେ ସଂପୃକ୍ତିକୁ ସ୍ପର୍ଶ କରୁଛି
ତା'ର ପ୍ରତିଛବି ସମୟର ଦର୍ପଣ ଉପରେ ଲଂବିଛି
ସିଏ ମୂକ କାର୍ଯ୍ୟାନୁଷ୍ଠାନ
ପରିଜନ ନ ହୋଇଥିବା ପରିଚିତ ପରିଦର୍ଶନ
କେଉଁଠି ଚାପଗ୍ରସ୍ତ ହୋଇଥିଲା ?

ନବମେଘର କୋମଳ ସ୍ମିତ, ରେଖାଂକିତ,
ହୃଦୟର ଗ୍ରାଫ୍‌ଖାତାରେ ତୁମେ ବିନା ଅନୁମୋଦିତ
ଲୁଚାଛପା ଚାଲୁଥିଲେ
ସୁଯୋଗରେ ଥିଲା ସଂକଟ ଏବଂ ସମ୍ବନ୍ଧରେ ଥିଲା
ଚାପିତ ପ୍ରତିବନ୍ଧକ
କେହି ଆମେ ଆଉ ସାମିଲ ହୋଇପାରି ନଥିଲେ

ସମ୍ଭାବନାର ଅନୁଷ୍ଠାନରେ କିଂବା
ସମୟର ମୁହାଣରେ
ପରିବର୍ତ୍ତନ ବଦଳାଇ ଦେଲା ନାଲି ପାନର ଠିକଣା
ସଂପ୍ରଦାନରେ ସଂକୋଚନରେ ନିର୍ଦ୍ଧାରିତ ହେଲା
ନବମେଘ ସ୍ମିତ ଗ୍ରାଫ୍‌ର ଗତି ଓ ମୂଲ୍ୟାୟନ
ତୁମେ ଅନ୍ୟ କା' ଆକାଶର ତାରାଟିଏ ଯେମିତି ।

ଏମିତି କେମିତି ନୀଳପଦ୍ମଟିଏ
ଅରତୁରେ ଫୁଟିଚି ?
ନିଜର ହୋଇ ଯାଇଥିବା ଚୁପ୍‌ଚାପ୍ ତମକୁ
ଡାକି ଆଣିଲା କେମିତି ?

ନଦୀର ନିଶ୍ୱାସରେ ଭର୍ତ୍ତି ନୀଳସ୍ୟାହିରେ ଅଙ୍କା ମୁହୂର୍ତ୍ତ
କାହିଁକି ତମେ ମୋ ଚେତନାରେ ହୋଇଗଲ ପରିବ୍ୟାପ୍ତ ।

ଇଏ କ'ଣ ରିଅଲ୍ ମଂତ୍ର, ପ୍ରାରମ୍ଭର ଡାକ
ଅସୀମ ଆକାଶ ଚିରି ଜହ୍ନ ଉଠିବ
କବି ଅନ୍ତର୍ଚେତନାର କମଳିନୀ
ଭାବୋଚ୍ଛ୍ୱାସକୁ ସୁଷମାରେ ଦୀପ୍ତିମୟ କରିବ
ମୁହୂର୍ତ୍ତ କାରୁଣ୍ୟରେ ତୁମ ପଦ୍ମଫୁଟା ପାଦଚିହ୍ନ ଆଙ୍କିବ ! !

ସବୁତ ହଜିଗଲାଣି ପ୍ରହର, ପ୍ରବାସ ଓ ପ୍ରଶ୍ୱାସ
ନିଶ୍ୱାସରେ ନୀଳଜହ୍ନଟିଏ ତୁମେ, କାହିଁକି ଦେଲ ଡାକ
ଯିବି କେଉଁଠାକୁ ? କେଉଁଠାକୁ ମତେ ନେଇଯିବେ
ଏବେ ମୋ ସଂଚିତ ପାପପୁଣ୍ୟ
ମୋର ଅଛି ଆଉ କିଛି ଠିକଣା, କୁହ ନୀଳମେଘ
ଖଡୀରତ୍ନ ପାଂଜି ପଢିବି ମୁଁ ଆଉ କେତେ ଖଣ୍ଡ ?

ବଡ ବାଧୁଚି କଂଟାର ଚୁମା
ନୂଆ ତାରିଖର ଛାତି ପୁରୁଣା ଦିଶୁଚି
ଉଜୁଡା ରତ୍ନ, ସ୍ନିଗ୍ଧଛଳଛଳ ତମେ,
ଏମିତି ଆଉ କାହିଁକି ଡାକିଲ ଏହି ଅପରାହ୍ନକୁ
ପାପୁଲିର ଆଙ୍ଗୁଠିଗୁଡା ଟେକି ହେଉଛନ୍ତି ଆକାଶକୁ
ଆକାଶ 'ଏ ଜାର୍ ଅଫ୍ ଡ୍ରିମ୍,'

ସ୍ଫଟିକ-ଶୂନ୍ୟ ସ୍ୱଚ୍ଛ
ତା'ଭିତରେ ଭାସୁଛି ଗୋଟିଏ ପୁଷ୍ପ, ଅଗ୍ନିରେ ନିର୍ମିତ !
❑❑

# ଭବମଣ୍ଡପ

କେଉଁଠିକୁ ଡାକୁଚ ମତେ
ମହୁର ଶେଯକୁ ? ତମୋମୟ ହୋଇଯାଇଛି ମୁଁ
ଗତିହୀନ ହୋଇଯାଇଛି ଜ୍ୟୋତି ଓ ଅଂଧାର
ବସନ୍ତ ଲେଖୁଚି କାଂତିମୟ ହସ୍ତାକ୍ଷର ।

ଏବେ ସଂଚୟଖାତା ବୁଜିବ ଅସ୍ତଗାମୀ ସୂର୍ଯ୍ୟ
କାଂଥ ଘଂଟାରେ ଆଉ ନଥିବ ଆୟୁଷ
ଦିବା ରାତ୍ରୀ ମୋ ଅନ୍ତର୍ଚେତନାରେ ଏକ
ମନୋହର ସ୍ପଂଦନରେ ନାଚିବ ହୃତ୍‌ପିଣ୍ଡ ?

ତୁମେ ତୁମେ ହୋଇ ରହିବ ? ରହିଥାଅ
ଅପେକ୍ଷାର ବାହୁବନ୍ଧନରେ କ୍ଷଣର କପୋତୀ
ମତେ ଡାକୁଚି
ସ୍ୱରଟା ତ ତୁମରି ! !

ମହୁର ଶେଯଟା ତ ଭୋଗ ମଂଡପ
ତୁମେ ମାଦକତାରେ ବିସ୍ତୃତ ଅସୀମ ରାସ
ମୁଁ ଅଭେଦ୍ୟ କାମନାର ଆଦି ନିଶା
ଫୁଲବିଂଚା ଅଭିଶାପରେ ଅହରହ ଜଳଂତା !
□□

# ଏବେ କେବଳ ଏବେ

ଆତ୍ମାକୁ ମୋ
ଅନାବୃତ କରିପାରୁ ନାହିଁ ବ୍ରହ୍ମାଣ୍ଡର ଅତୀତ,
ବୈଚିତ୍ର୍ୟମୟ ଅନନ୍ତ, ଆଘାତ କରୁଛି ଜନ୍ମକୁ,
ମୃତ୍ୟୁ ଅଧୀଶ୍ୱର !

ଚିଦାତ୍ମା ପାପ ମୁକ୍ତ, ତାପଯୁକ୍ତ ବିଭୂତି
ଆନନ୍ଦମୟ ଚିଦ୍‌ବସ୍ତୁ ନିବୃତ୍ତିରେ ବଂଧା ଯାଇଛି
ଜହ୍ନପରି ଯିଏ ମୃଦୁ ସ୍ମିତର ଜାଲ ଫିଙ୍ଗୁଛି
ସିଏ କିଏ ? ଉପବିଷ୍ଟ ବୃଦ୍ଧ ବିଷାଦ !

ସର୍ବୋତ୍ତମ ଅବଲମ୍ବନ ବ୍ୟଂଜନ ପରି ପ୍ରସ୍ତୁତ
କ୍ଷୁଧାର ଦ୍ୱାରଗୁଡିକ ଉନ୍ମୁକ୍ତ
ସଧବା ଅମୃତ ତତ୍ତ୍ୱାଭିଳାଷ, ସୌନ୍ଦର୍ଯ୍ୟହାନୀ-
ପୀଡାରେ ପୀଡିତ !

ମନୋଭାବପରି ତମେ ଆଉ ଆସିପାରିବନି
ନିର୍ଲିପ୍ତ ଗୃହତ୍ୟାଗୀ ଛଂଦ
ସତ୍ତାର ଗୋପନ ଗୁହାରେ ଖୋଜୁଛି ଶବ୍ଦ
ଅସ୍ତମିତ ସୂର୍ଯ୍ୟ, ସଂକୁଚିତ ଅଧ୍ରୁବ !

ଏବେ କେବଳ ଏବେ, ପ୍ରତ୍ୟକ୍ଷ ବିସ୍ମୃତ !
ଅଦିତିଙ୍କ ସଧବା ଶାଢୀ
ମୂର୍ଚ୍ଛନା ଭିତରେ ପାର୍ଥିବ ଉତ୍ତୀର୍ଣ୍ଣ ନୀରବତା
ଅପରୂପ ଦୀପ୍ତ ନାହିଁ କିଛି, କେବଳ ବୁଢା ଭୋକ !

ଆଲୋକର ପରବର୍ତ୍ତୀ ପ୍ରଶ୍ନ !
ପରିଚୟ କର୍ମ ମୁଖର, ଭାବଧାରା ପ୍ରଜ୍ଜ୍ୱଳ
ଅଭାବଧାରା ତ୍ରୁଟିହୀନ ପାଟୀଗଣିତ
ଅନିବାର୍ଯ୍ୟ ଆବଶ୍ୟକତା ୦'ର ଗର୍ଭପୂରିତ
କାହାଣୀ ପରି ତମ ସ୍ମୃତି ଭାରି ଉତ୍କଟ ।
ଯେମିତି ମହାକାବ୍ୟଟିଏ ପୂର୍ଣ୍ଣତାକୁ କରୁଛି ଆହାତ ।।

ଜୀବନର ହୃଦୟଟା ବିନ୍ଧାଣିର ନିହାଣରେ ରକ୍ତାକ୍ତ
ସତେଜ ଇତିହାସ
ଆଉ ଗୁନ୍ଥି ହେଉନି ତାତ୍ପର୍ଯ୍ୟର ସମୁନ୍ନତ ଆବୃତ୍ତି
ଭୁଲିଯାଅ, ଭୁଲିଯାଅ, ଭୁଲର ଭାସ୍କର୍ଯ୍ୟକୁ ମିନତି !
□□

# ଯାତ୍ରୀ

ବହିର୍ମୁଖୀ ପ୍ରାଣମୟ ଉଦ୍ଦୀପନା
ପ୍ରଣୟନ କରେ ସାଂସ୍କୃତିକ ପରିଚୟ
ସିଧାରାସ୍ତା ସ୍ୱପ୍ନିଳ ଓ କଠୋରତାରେ ବର୍ଦ୍ଧିତ
ନିଷ୍ଠା ଓ ନିର୍ଘୋଷ ମହିମାକୁ କରେ ସର୍ବଶ୍ରେଷ୍ଠ

ପ୍ରେରଣା ଚିରକାଳୀକ ଅମୃତ ଯେମିତି ସାମରିକ
ସମୃଦ୍ଧିର କଳାପଟାରେ ବିଧାନର ନୂଆ ତାରିଖ
ବ୍ୟାପକ ପ୍ରତିଟି ମୁହୂର୍ତ୍ତ, ବିସ୍ତୃତ ଆତ୍ମୋକର୍ଷ
ସ୍ୱାଭାବିକ ସତ୍ତାର ସନ୍ତୋଷ ଯେମିତି ବୈଶିଷ୍ଟ୍ୟ

ଅବିରାମକୁ ଚିହ୍ନି ପାରିଲା ନାହିଁ ଅଭିରାମ ?
ମାନବାତ୍ମା ଲବଣର ଆର୍ଟ
ଗଭୀରତର ତୃଟିର ବୃଦ୍ଧି ବିକାଶୋନ୍ମୁଖୀ
ସ୍ୱତଃ ପ୍ରବୃତ୍ତ ବ୍ୟଂଜନାର ଦରଜାକୁ ଦେଲା ବୁଜି
କାଳ ନଦୀର ଗୋଟିଏ କୂଳ ଅନ୍ଧକାରର ଅଧୀନ
ଅନ୍ୟ କୂଳରେ ପହଂଚୁଛି ସକାଳର ବିଧାନ
ମୁଁ ଅଛି, ଅଛି !
କିନ୍ତୁ.....ତୁମେ କେଉଁଠି ?

ଶୂନ୍ୟ ଓ ଅଶୂନ୍ୟ ମଝିରେ ଲଂଡା ସାମ୍ରାଜ୍ୟ ଗୋଟିଏ
ଆଦିଗନ୍ତ ବିସ୍ତୃତ ସିକତା, ମରୁର ଭୂଗୋଳ,
ମଝିରେ ଝଙ୍କା ଆମ୍ବଗଛଟିଏ ମରୁ ଝରଣା
ଶୀତଳ ଛାୟାର ଛବିଟିଏ, ତମରି ଠିକଣା !

ହିଂଲଜ୍ଜର ଯାତ୍ରୀ ମୁଁ ପ୍ରାର୍ଥନା କରୁଛି
ତୁମରି କରୁଣା !
□□

# ଦସ୍ତଖତ

ବ୍ରହ୍ମାଣ୍ଡର ମାନେ କ'ଣ,
ଅପୂର୍ଣ୍ଣ ଗୋଟିଏ ପୂର୍ଣ୍ଣତା, ତୁମ ଜୀବନ,
ତୁମ ଜ୍ୟୋତି ଓ ତୁମ ପ୍ରେମ
ପୂର୍ଣ୍ଣତର ମାନିଫେଷ୍ଟସନ୍, ସମଗ୍ର ଅଂଶ !

ଜ୍ଞାନ ବଦଳୁଛି, ସତ୍ୟ ବଦଳୁଛି
ସମସ୍ତ କୋଷ ଉଜ୍ଜ୍ୱଳି ଉଠିଛି
ମତେ ଥରେ ବୁଝାଇ ଦିଅ
ମୁହୂର୍ତ୍ତମାନେ କେମିତି ଜଳୁଛନ୍ତି
ଅଧାଜଳା ମହମବତୀପରି !

ମୋ ଚାରିପାଖ ସକାଳ, ଅଚିହ୍ନା ଭୋର
ଏଇ ଭୋର ବେଳେ
ନୀରବତା ଜୀବନ୍ତ ହୋଇଉଠେ
କେଜାଣି, କାହିଁକି, ଗଭୀର ହୋଇଯାଏ
ପ୍ରାର୍ଥନା !

ମୁଁ ପଚାରିଲି, କ'ଣ ତୁମ ନାଁ'
ତୁମେ କହିଲ, 'ମୁଁ' ! ଉଚ୍ଛୁଳି ଉଠିଲି
ମୁଁ କହିଲି, ଦିଅ ! ଦିଅ ମତେ
ମୁଠାଏ ମୁହୂର୍ତ୍ତ ! ଅଲିଭା ଅଲେଖା ଛୋଟ ଏକ
ତୁମ ଦସ୍ତଖତ ! ଦିଅ...
ଦଦ

# ବୈପୁଲ୍ୟ

ଉତ୍ତେଜନାରେ ଫାଟି ପଡୁଚି ଅନନ୍ତ ଭାବ
ଅପରିମେୟ ଉନ୍ମାଦନାର ନୀଳଜ୍ୟୋତ୍ସ୍ନା ଆୟତ
ନୂତନ ଆଶ୍ରୟଟିଏ ଆତ୍ମ ପ୍ରତ୍ୟୟକୁ କରିଛି ଧନ୍ୟ
ଏବେ ଖାଲି ଖଣ୍ଡିଏ କୌପୁନୀ, ସିଏ ବି ଅନ୍ତରାୟ !

ବୈକୁଣ୍ଠକୁ ଟାଣି ନେଉଛି ଉଦ୍‌ବୁଦ୍ଧ ବ୍ୟାପ୍ତି
କରୁଣାଘନ କୋମଳତା ମେଘପରି ଆଶ୍ୱସ୍ତ କରିଛି
ଚିତ୍ର ଆଙ୍କ ! ଚିତ୍ର ହିଁ ତୁମରି ଗଣିତ, ବର୍ଷମାସ
ଚିତ୍ର ହିଁ ତୁମ ମାତୃଭୂମିର ହସ ଓ ଦୃଶ୍ୟର ମଠ !

ଆଗକୁ ଧ୍ୱଜାଟିଏ
ଗୋଟିଏ ରଙ୍ଗର ପ୍ରସଙ୍ଗ, ପ୍ରସବଣଟିଏ
କଲ୍ୟାଣମୟୀ ପବନ
ବାଳିକା ଭକ୍ତି, ବ୍ରହ୍ମମୟୀ ସନ୍ତାନ
ଧ୍ୟାନର ଛିଭ ଲମ୍ବ
ଏନ୍ତୁଡ଼ିରୁ ଶ୍ମଶାନ କିଂବା ଦ୍ୱାରକାରୁ ଏରକା
ମଝିରେ ଚୈତନ୍ୟ
କାଳର କଳା ଭାବାବିଷ୍ଟର ରଚନା !

ସ୍ୱୟଂବ୍ରହ୍ମ, ଅନନ୍ତ
ମା' ତୁମେ ଅନନ୍ତା, ତୁମେ ପ୍ରଶ୍ନାତୀତା
ପୁଲକର ପୁଲକ
ଅଚିତ୍ରର ଚିତ୍ରଟିଏ ଆଲୋକର ଆଲୋକ !
□□

# ନିମଜ୍ଜନ

ଅନ୍ଧ ଶକ୍ତି ବିପୁଳ, କୂଳରୁ ଆକର୍ଷିତ କରି ନେଉଛି
ସ୍ମୃତିକୁ, ଖେଦର ମଝି ସମୁଦ୍ରକୁ;
ଅନ୍ତହୀନ ଆଲୋକ, ଆନନ୍ଦ ଓ ଅମରତ୍ୱର ଦୀପ୍ତି
ଛପି ଯାଉଛି ଅଧିକାର ବିହୀନ ମେଘ ଆଢୁଆଳରେ !

ସୀମା ସବୁବେଳେ ସୀମିତ
ଅସୀମ ଅଧିଷ୍ଠିତ ଅନନ୍ତ, ଯଥାର୍ଥ ସତ୍ୟ !
ଆଢୁଆଳଟି ଦୁଃଖ, କେତେ ବ୍ୟସ୍ତ କରୁଛି
ପ୍ରଭୁତ୍ୱ ଜାହିର୍ କରୁଛି କୋଠିଆ ଦାସ !

ଅବସ୍ଥିତି, ଆବେଗ ଓ ଆଲୋଡନ
ଛଡାଛଡା ଆବାସପରି ଛିଡା ତୁଙ୍ଗତମ ବେଦନା
ସୀମାବଦ୍ଧ ଅସମର୍ଥତାକୁ କରୁଛନ୍ତି ଦଂଶନ
କେତେ ଆଉ ସନ୍ତୁଷ୍ଟ ରହି ସେମାନଙ୍କୁ ସହନ କରିବ ଜୀବନ ?
❒❒

# ଆବାହନ

ବିଜୟର କେନ୍ଦ୍ର ସ୍ଥଳ କେଉଁଠି
କେଉଁଠି ପ୍ରାଣ ପ୍ରାଚୁର୍ଯ୍ୟର ଚିନ୍ମୟ ଐଶ୍ୱର୍ଯ୍ୟ
ଶକ୍ତି ଦୃପ୍ତ ବିଶ୍ୱାସର ମଧୁକୋଷ ଉଦ୍‌ବୋଧିତ
ଏଇଠି, ଏଇଠି ସେ ଅବିନଶ୍ୱର ପଦ୍ମପୁଷ୍ପ

ସର୍ବତ୍ର ପାଣି ପାଦୌ ବୈଦାନ୍ତିକ ଅଭେଦ ତତ୍ତ୍ୱ
ଚୈତନ୍ୟ, କର୍ମ ସ୍ରୋତ, ପୁଲକ-ପ୍ରସନ୍ନ ଜୀବନ ଗ୍ରନ୍ଥ
ଉଜ୍ଜୀବିତ ମହାମଂତ୍ର ସତ୍ୟର ତ୍ରିଶାଖା ବେଲପତ୍ର
ନୀଳନୀଳ 'ଅନୁଭୂତି' ଜ୍ଞାନର ନିର୍ଯ୍ୟାସ ପ୍ରେମ ଓ ପ୍ରେମମୟ

ଜାଗ୍ରତ ସମ୍ପଦ, ଭୋଗ ସର୍ବସ୍ୱ, ଶାଶ୍ୱତ
ଗଙ୍ଗା ଅତିକ୍ରମ ନ କରିଛି କେତେ ଯେ ବୈଚିତ୍ର୍ୟ
ଧୈର୍ଯ୍ୟରଖ, ଘଣ୍ଟ ବଜାଅ, ଲୀଳାର କ୍ରୀଡାନକ
ଫୁଟନ୍ତା ଲବଙ୍ଗଫୁଲ ବାସିବ !
□□

# ସୀମା ଆରପଟ ଭୂମି

ମାୟାର ବହୁ ବିଚିତ୍ରତା, ବିଳୟ ଏକମେବ
ସତ୍ୟ ?
ଅନ୍ନଠୁ ଅଲଗା ଜଡ ? କାହାର ଅନ୍ନ
କିଏ ସେଇ ବୀର୍ଯ୍ୟବାନ ଦିବ୍ୟ ପୁରୁଷ ?

ବାସ୍ତବ ଯୁକ୍ତିର ବିରୁଦ୍ଧ
ହୋମିଓପଥି ଚିଦ୍ ରହିତ
କିଂତୁ 'ଭେଷଜ' ଓ 'ଭିଷକ୍' ତ ନିଜେ ତେଜ
ଆଣ୍ଟୁପାତି ଦୀପାଜାଳି ମାଗିଥିଲି ମୁଁ ।

ପୌତ୍ତଳିକତାରେ ବାନ୍ଧି ହୋଇ ରହିବା ଅଦ୍ୱୈତ
ସତ୍ୟ କେମିତି ହେଲା ଦ୍ୱୈତ
ଦୃଶ୍ୟଠାରୁ ଭିନ୍ନ ତତ୍ତ୍ୱ ଓ ବିଶ୍ୱାସ
ପିପାସାର କ୍ଷେତ୍ର କ'ଣ ହୁଏ ନାହିଁ କଦାପି ଶାନ୍ତ ?

ଭୂମି ସୀମା ଆରପଟ ?

□□

# ରୂପାୟନ

ଘର ତ ତିନିତିନି ଥର ପ୍ରତିଷ୍ଠା ସରିଛି
କାହିଁ ସର୍ବାଙ୍ଗୀନ ପ୍ରକାଶର ଦେଖା
କାହିଁ ସ୍ୱୟଂ ସଂଚାରୀ ଆନଂଦର ପ୍ରତିଷ୍ଠା
ଖାଲି ଭୁଂଜିବାର ସଂତପ୍ତତା !

ଅସ୍ଥିର କରେ ଉଦ୍‌ବେଗକୁ
ଯାଂତ୍ରିକ ଆବଶ୍ୟକତା ଅଜଗରପରି
ଭିଡିମୋଡି ହୁଏ ଜଡ ବୁଦ୍ଧିର ଅରଣ୍ୟରେ
ଭଙ୍ଗୁରତାର ଅଧୀନ କେମିତି କରାଇବ
ଦିବ୍ୟ ରୂପାୟନ ?

ଜ୍ୟୋତି ଦ୍ୱାରା ଉଦ୍‌ଭାସିତ କ୍ରମ ପରିଣତି
କେମିତି ଲେଖିବ ଚିଠି ଅମୃତର କାଳିରେ
ସଫଳ ସନ୍ତୋଷ ଓଷ୍ଠ ଖୋଲି କହିବ
'ମୁଁ' ଅନୁଭୂତ, ଐକ୍ୟ ଓ ସମଗ୍ରତା ଆବିଷ୍କୃତ

ଅତୁଆ ସମାହିତ ! !
□□

# ରସୋ ବୈ...

ଆତ୍ମା ତ ଅଦୃଶ୍ୟ ଗୋଲାପ, ଶୁଂଘିବ ?

ଆନଂଦ ଆନଂଦ କିଏ ବାସୁଛି, ତଲ୍ଲୀନ ?

ଅତଳକୁ ଓହ୍ଲାଉଛି ଦୁଇଟି ରକ୍ତ କୋକନଦ
କିଟ୍ କିଟ୍ ଅଂଧାର, ଅଂଧାରରେ ଅଂଧାରର ଅବତରଣ
ଭୋରପରି ବାସୁଛି ଜୀବନ
ଭୋର, ଗୋଟିଏ ବିଭୋର !

ପ୍ରେମକୁ ପାଛୋଟି ଆଣିଛି ଯେମିତି ବସନ୍ତ
ମଳୟ ଉଡାଇଛି ସୁଗନ୍ଧର ଜୈତ୍ର
ଦିନର କରୁଣାମୟୀ ମାତା, ଆସୁଛି ଉଷା !
ଉଷା କିଏ, ତଟସ୍ଥ ବହିରଂଗ, ଏକସ୍ମିନ୍, ସମସୂତ୍ର !

ସଂସାରର ମାତା, ସତ୍ୟର ଦୟିତା
ସ୍ନେହ ସମାବେଶ, ପ୍ରେମର ଜୀବନ୍ତ ସତ୍ତା
ବୈପୁଲ୍ୟର ନିଜ ଇଚ୍ଛା, ନିରନ୍ତରର ମିଳନ ଆକାଂକ୍ଷା
ତତ୍ତ୍ୱର ନାଟ୍ୟରସ, ବ୍ରହ୍ମ ଓ ବାକ୍ !
□□

# ଲୀଳା ପ୍ରବାହ

ହେ ଅଚିନ୍ତ୍ୟ ଅପ୍ରମେୟ,
ଚିଦ୍‌ଘନ
ଶୂନ୍ୟର ଅଶୂନ୍ୟ,
ଥଲ୍‌ଥଲ୍ ସ୍ପଂଦନ, ଜ୍ୟୋତିଷ୍ମାନ୍ !

ସୌନ୍ଦର୍ଯ୍ୟର ନିଜ ଟିପଚିହ୍ନ
ଓ ଅସୌନ୍ଦର୍ଯ୍ୟର ସୌନ୍ଦର୍ଯ୍ୟ;
ଘନ କରୁଣାର ମହାଶିବ
ଅମୃତର ଅମୃତ ହେ ନୀଳଶୂନ୍ୟ !

ହେ ଅନନ୍ତ ଅନୁପମ,
ଆବାହନର ଆବାହନ;
ଆସ୍ପୃହାର ଉତ୍ତର,
ଚିଦ୍‌ଘନ, ହେ ଶୂନ୍ୟପ୍ରଶ୍ନ, ଅପ୍ରଶ୍ନ !

କରୁଣାଘନ, ମହାପ୍ରସୂନ
ପ୍ରଣାମ, ପ୍ରଣାମ ମୋ ପ୍ରିୟ ପରିଜନ;
କୁହ, କିଏ ନଟ ?
ହେ ନିର୍ଦ୍ଦେଶକ, ନିଖିଳର ନାୟକ !

ଆପଣଙ୍କ ଅଭିନେତା ମଂଚରୁ ପଡି ଆହାତ
ଏଥର-
ଅଭିନୟରୁ ଦିଅ ଅବ୍ୟାହତ, ଦିଅ ବିଶ୍ରାମ
ହେ କରୁଣାଘନ !

କରୁଣାମୟ, ଘୋର ନିର୍ଜ୍ଜନ,
ମହାନାଟରୁ କର ମୁକ୍ତ,
ହେ ଅନୁପମ ଚିଦ୍‌ଘନ, ହେ ନିର୍ଦ୍ଦେଶକ,
ପ୍ରିୟ ପ୍ରେମମୟ ଯଂତ୍ରୀ ମୋର !
ଅକ୍ଷମକୁ
କେତେ ଆଉ ନକ୍ର ପରି ଛେଦିବ,
କେତେ ଆଉ ବଂଧୁ ବୋଲି
ବନ୍ଧନର ରଜ୍ଜୁ ତୁମ ପ୍ରାଣକୁ ମୋ ବାନ୍ଧିବ ?
□□

# ଚୂଡ଼ାଂତରୁ ଚୈତ୍ୟ

ପ୍ରେମ ଏକ ଆକାଂକ୍ଷା, ପ୍ରାପ୍ତି ଓ ଅପ୍ରାପ୍ତିର ପରିଚ୍ଛନ୍ନ ଅଗଣା
ଯାବତୀୟ ଅହଂ ପ୍ରେରିତ ଗୋଟିଏ ଗୋଲାପୀ ଋତୁ
ଯେତେବେଳେ ଦୀକ୍ଷିତ ହୋଇ ଖୋଜେ ବିଭବ
ପ୍ରକଟ ହୁଏ ଅଧିକୃତ ଉପାଦାନ, ପ୍ରାଣ କର୍ମର ଠିକଣା ।

ସୀମାହୀନ ସୁଖର ମଝି ସମୁଦ୍ରରେ ଜହ୍ନକୁ ଦେଖି ଦେଖି
କ୍ରିୟାତ୍ମକତାର ଜାହାଜଟି କେଉଁଠୁ ଆସି
ପହଂଚିଯାଏ କେଉଁଠି ! ସେଠି ଥାଅ ତମେ ?
ଥାଏ ସଦା ଅନ୍ତର୍ନିହିତ ମଳୟ ପବନ ?

ଲୁଣି ପାଣିର ବାସ୍ପାରେ ଅବରୁଦ୍ଧ ସମୁଦ୍ରର ପ୍ରକୋଷ୍ଠ
ପାଇଲ ତମେ ପ୍ରାଣଗତ ଆବେଗ ଦୀପ୍ତ ଦୈହିକ ଅକାଂକ୍ଷା
ପାଇଲ ଗତି ସ୍ପଂଦନର ସତ୍ତା, ଅର୍ପିତ ସର୍ବମୟତା ?
ତମ ଆରାଧନାର ପବିତ୍ରତା ସ୍ୱୀକାର କଲା ସମାଜିକତା ! !

ମୁହୂର୍ତ୍ତର ମୂର୍ତ୍ତିମାନଙ୍କୁ ଆଉ ପୂଜି ପାରୁ ନାହିଁ
ଅପୂର୍ଣ୍ଣ କ୍ଳାନ୍ତି ଓ ଅନୁଭବର ସୁକୃତି ମୋ ପ୍ରେମାଭିଭୂତି;
ରୂପ ଦ୍ୱାରା ତୁମେ ଆବୃତ୍ତ ହୋଇଥାଅ, କଦାପିଟିଏ;
ତୁମକୁ ମୁଁ ରୂପାୟନ କରିଦିଏ ସର୍ବଗ୍ରାହୀ ସମ୍ମୋହନରେ ।

ଅନନ୍ତ ସୁଖ ସଦନରେ
ଯେଣୁ ତୁମେ ହିଁ ଘର ! ଆଲିଙ୍ଗନର ସୌନ୍ଦର୍ଯ୍ୟ !
ମନୁଷ୍ୟ ସତ୍ତାର ନିକଟତମ, ଏକ ମର୍ମ ଉଦ୍‌ଘାଟନ
ଶୁଦ୍ଧବୋଧର ବେଦୀ ଉପରେ ଥାଏ ଜ୍ଞାନର ଆସନ ! !
□□

# ସେଓରୁ ସରଣୀ

ଜ୍ଞାନ କ'ଣ ? ଇନ୍ଦ୍ରିୟବୋଧ୍ୟ ରୂପାୟନ
ଏକତ୍ୱବଦ୍ଧ ଅନୁଭୂତିଟି ଗଭୀରତମ
ଜ୍ୟୋତିର୍ମୟ ଉପାଦାନ ପରିଚିତ କରାଇ ଦିଏ
ଛାୟାକୁ ଭ୍ରମ !

ବସ୍ତୁର ଯଥାର୍ଥ ଉତ୍ପତ୍ତି, ନିହିତାର୍ଥ ଓ ସୀମାକୁ
ଚିହ୍ନାଇ ଦିଏ ଦୃଷ୍ଟି ! ଜ୍ଞାନ ବୃକ୍ଷ, ବୁଦ୍ଧି ତା' ଭୂମି
ଅଜ୍ଞାୟତନ ତମ ସଚଳ ଗତିକୁ ଦେଲା ଦ୍ରୁତତ୍ୱ
ଚରମ ଭାବାତ୍ମକ ପରମ ସତ୍ତାକୁ ତମେ ଗଲ ଚିହ୍ନି ?

ଏମିତି ତମେ ବିଷୟ ସମୁଦ୍ର ପାର ହୋଇଗଲ
ପାରମ୍ପରିକ ପରିପୂର୍ଣ୍ଣତା ଭିତରକୁ, ପାଶୋରିଦେବାକୁ
ସକଳ ପ୍ରସୀମନ ଓ ଅତୀତର ଆତ୍ମସତ୍ତା
ଅନିର୍ବଚନୀୟ ଆନନ୍ଦର କବିତା, ପାଶୋରି ଦେଲ ?

ପ୍ରସୀମିତ ଶରୀରଗତ ଚିନ୍ମୟତା, ବ୍ୟକ୍ତିସତ୍ତା;
ପ୍ରକୃତି ନିରୂପିତ ଯଥାର୍ଥ ପରିଚୟର ପଂକ୍ତୁରୀରେ ଥାଅ
ନ ଯାଅ,
ଅନିର୍ଦ୍ଦିଷ୍ଟ ଏହି ଅନନ୍ତଙ୍କ ସରଣୀ, କଣ୍ଟକ ବିରଚନା !

ଜ୍ଞାନ ସ୍ୱରୂପିଣୀ, ଆଗୋ ମୋର ଗୋରଚିନା !
□□

# ଚିତ୍ର

ମୋ ଆୟତ ବାହାରେ ତୁମେ
ତୁମେ ଉପଲବ୍ଧି ପ୍ରେରିତ ଅନନ୍ତ ବୋଧି ନିର୍ଭର
ଅନ୍ତର୍ନିହିତ ଏକ କ୍ରିୟାତ୍ମକତାର ମନୋଭୂମି
ତୁମେ ଯଥାର୍ଥ କିଂତୁ ଆୟତ ବାହାର ।

ପ୍ରଭୁତ୍ୱର ନବ ମୂଲ୍ୟ;
ମାନବୀୟ କ୍ରିୟାତ୍ମକତାରେ ମୃତ୍ୟୁର ମୂଲ୍ୟ ଦେଇ
ତୁମକୁ କିଣି ହେବ ?
କିଛି ହରାଇ ଦେଇ କିଛି କି ପାଇ ହେବ ?

ଚୂଡାନ୍ତ ଅପରିହାର୍ଯ୍ୟ
ଅନୁମତି ପାଖରେ ହାରିଗଲା ଏ ଜୀବନ
ସାମର୍ଥ୍ୟର ଆକର୍ଷଣ ମିଛ, ଚେଷ୍ଟାଗୁଡିକ ଆହ୍ୱାତ
ବହିର୍ଜୀବନ ଦୃଷ୍ଟାନ୍ତ ଦୃଶ୍ୟ, ଚିତ୍ର !

ଯେଉଁ ଚିତ୍ରକୁ ଲିଭାଇ ଦିଏ ସମୟର ହାତ !

❐❐

# ପରିପ୍ଳୁତା

ମତେ ଫେରି ଆସିବାକୁ ପଡିଛି
ବିବର୍ତ୍ତିତ ଉପାଦାନମାନଙ୍କ ମାଙ୍ଗଳିକ ନିଷ୍ଠୁରତା ପାଖରୁ
ଖରସ୍ରୋତା କୂଳର ମୋଟା ଚାଳ ଓ କାଠଖୁଣ୍ଟ ଘରୁ
ଏକ ପୂର୍ବ ପର କ୍ରମରେ ସଜ୍ଜା ସାମାଜିକତା ପାଖକୁ

ସମୟର ପୁନରାବିର୍ଭାବ ହରାଇଛି ନିୟମିତତା
ଆଗକୁ ଗୋଡ ପକାଇଛି ଚପଲ ପିନ୍ଧା ବାସ୍ତବତା
ସ୍ୱର୍ଗ ରାଜ୍ୟ ଫେରି ଯାଉଛି କଳାମେଘ ଆରପଟକୁ
ପୃଥିବୀ ଓ ପାତାଳ ପ୍ରାଣଭୂମିରେ କ୍ରିୟାଶୀଳ

ପ୍ରଚ୍ଛନ୍ନ ଓ ବିଧାନ ।

ପରମ ଦିବ୍ୟତା ପ୍ରକାଶର ଖୋଜୁଛି ରାସ୍ତା
ପରିଭାଷାରେ ଶରୀରକୁ ଡାକୁଛି ସମସ୍ୟା
ଆୟତନ ଅଣାୟତ, ନାଭିଚକ୍ରରେ ନାଚୁଛି ବର୍ଷା
ଜ୍ଞାନୀର ପବିତ୍ରତା ଓ ତମକୁ ନ ପାଇବା ଆବଶ୍ୟକତା ।
□□

# ତମର

ଅନିଚ୍ଛୁକତା ସ୍ୱର୍ଣ୍ଣ ମୃଗର ଶିଶୁ
ଧରା ଦେଲା ଠିଆ ହୋଇ ତମ ବୁଦ୍ଧିର ତରୁ ତଳେ
ତମ ରୁଚିର ସହମତି ହେଲା ଆକୃଷ୍ଟ
ତମ ମତର ପ୍ରବୃତ୍ତି ସବୁଜ ଦୂର୍ବା, ତାକୁ କାଟି ଦେଲ ଆହାର !

ପୁଚ୍ଛ ତା' ଭାରସାମ୍ୟ, ଦୋହଲି ଗଲା ଓ ହଲିଲା
ଶୁଦ୍ଧର ମୂଲ୍ୟବୋଧ ବଦଳିଲା, ଯେମିତି ପାଗ,
ନିର୍ଦ୍ଦୋଷ ସାମର୍ଥ୍ୟ ନିମ୍ନ ସ୍ତରୀୟ ନିଦାନକୁ
ସଂପୂର୍ଣ୍ଣ ଭାବରେ କଲା ସମର୍ଥ ଓ ସମ୍ଭବ !

ପୂର୍ବ ଗଭୀରତା ସମ୍ପନ୍ନ ନିଶ୍ଚଳତା
ମୋହର ଐଶ୍ୱର୍ଯ୍ୟରେ ଟପିଲା କ୍ରିୟାସ୍ତର
ବାମ ପାପୁଲିରେ ନୈଃଶବ୍ଦ୍ୟ ପୋଛି ଦେଲା ତ୍ରୟଗାର
ସକଳ ଶବ୍ଦର ଜନନୀ ଓଁ ଶାନ୍ତିମୟତା ଭିତରେ ଫେରିଲେ ?

ଅତିମିଶ୍ରିତ ଜାଲ ଭିତରେ ତମ ହାତ ତିଆରି
ହୁଲି ଡଙ୍ଗାଟି ଛଂଦି ହୋଇଯାଇଛି
ଅଶୁଦ୍ଧ ସମୁଦ୍ର ଜଳ, ସବୁ ଡୁବି ଗଲାଣି, ସମ୍ୟକ୍ ଇଚ୍ଛା
ସମ୍ୟକ୍ ବିଶୁଦ୍ଧତା ଓ ସମ୍ୟକ୍ ନିଶା !

ଯେଉଁଠି ଥାଉ ତମ ସତ୍ତାଂଶ, ବିଶ୍ୱଗତ;
ବିଶ୍ୱାସର ଭୂମିରେ ଏବେ ହାରି ଗଲା ପ୍ରଶ୍ୱାସ
ତମର
ସମୁଦାୟ ତମର !
□□

# ଆଶା

'ଟ୍ରାଡିସନ୍ ଅଫ୍ ଥଟ୍'ରେ ଗୋଟିଏ ମଧ୍ୟ ବିନ୍ଦୁ 'ଆଶା'
ଜୀବନକୁ କରେ ଅଧିକରୁ ଅଧିକ ଉତ୍ତେଜିତ
ଜୀବନ ଜ୍ୟାମିତିକ ଏକ ବକ୍ରରେଖା
ଇମିତି ଅନେକ ବିନ୍ଦୁଙ୍କ ମିଳିତ ରାସ୍ତା, ଭାବନାରେ ସୀମିତ !

ପାର୍ଥିବ ଆଶା ନିଶ୍ଚୟ ଲଭିବ ମୃତ୍ୟୁ
ସତ୍ୟ ଆଶା ସବୁଜପତ୍ର, ସର୍ବଦା କଅଁଳୁଥିବ
ଯିଏ 'ଟ୍ରାଏଲ୍' ଲେଖିଚି, ସିଏ 'ଦୁର୍ଗ'ଟିକୁ ବୁଝିବାକୁ
ଉଦ୍ୟମ କରିଛି !

ଗୋଟିଏ ସୀମା ଭିତରେ ମାନବୀୟ ଅବସ୍ଥାର ଦାବୀ
ଅଦ୍ୱିତୀୟ ଭାବନା, ଲମ୍ଫଦିଏ ବିପୁଳ ଆଶା
ପ୍ରାଚୀନ ଭୂମି ଉପରେ ନୂତନ ଲୋହିତ ଶିଖାରରେଖା
ଦିବ୍ୟଦ୍ୱର ଶୂନ୍ୟତାକୁ କରେ ସର୍ବେକ୍ଷଣ ।

ଆଶା ଚିତ୍କାର କରେ, ଜୀବନ ମାଡିଚ୍ଚାଲେ
ଅଚିହ୍ନା ସ୍ୱପ୍ନିଳ ଭୂମିକୁ, ନିଶ୍ଚିତ ତାର ଶକ୍ତି ଦିଗକୁ,
ମାତ୍ର ତାହା ଖେଦର ଏକ ଶକ୍ତ ସଂସ୍କରଣ
ଦର୍ପଣ ଭିତରେ ପ୍ରତିବିମ୍ବଟିଏ ଥାଏ କ'ଣ ?

ଡାକୁଛି ଦୂରସ୍ଥ ନିମନ୍ତ୍ରଣ, ନୂଆ ଫ୍ରଷ୍ଟ୍ରେସନ୍,
ଟେଲିଫୋନ୍ ଭିତରୁ ଶୁଭୁଛି ଗୁଡିଏ ମିଳିତ ସ୍ୱର
ବେଆଡା ହସ, କାନ୍ଦୁଛି କେହି ଜଣେ ସ୍ତ୍ରୀଲୋକ ?
ଆଶା ପାଇଁ ବଡା ହୋଇ ରହିଛି ଯଥେଷ୍ଟ ଅବଜ୍ଞା !

କଳ୍ପନାରେ କାହିଁ ନୈତିକତା
ସ୍ୱଚ୍ଛତାରେ ରିଜନିଂ ଇଜ୍ କ୍ଲାସିକ୍
ଡଜ୍ ଗଡ୍ ଏକ୍‌ଜିଷ୍ଟ ?
ସମ୍ଭାବନାଟା ସତେଜ ମଧୁର ମାଛ; ଆଶାଟା ସାମୟିକ !
❒❒

# ସ୍ୱପ୍ନ

||୧||

ହାତ ବାହାରେ ରହିଥିବା
ଯେ କୌଣସି ଚାଲାକିର ନାମ
ଯେତେ ମସୃଣ, ଦାରୁଣ କି ନିଦାରୁଣ ହେଲେ ବି,
ସ୍ୱପ୍ନ !
ସ୍ୱାର୍ଥ-ସ୍ନେହକୁ ଚାପି ଧରି ଚମକାଏ
ଘର କାନ୍ଥପରି ଠିଆ ହୁଏ ନିଦ୍ରା ଯିବା ମାତ୍ରେ !

କେଉଁଠି ଥାଏ ଏହି ଆନଂଦର ଛବି
ଦିବସରେ ବି ଫଣା ଟେକେ
ମୋହ-ଜ୍ୱାଳାରେ ଜାଳିଦିଏ ଶାନ୍ତିର ପ୍ରଶ୍ୱାସ
ସହସ୍ର ଅତୃପ୍ତିକୁ ମିଠା ସ୍ୱରରେ ଆଣିଥାଏ ଡାକି
ରଡି ଡାଆଣୀ ଯେମିତି
କଂଚା ମନକୁ ଭୁଲାଇବାରେ ପାରଙ୍ଗମ ଅତି !

||୨||

ସ୍ୱପ୍ନର ଆଶ୍ରମ ମନର ଅବଚେତନ ଅରଣ୍ୟ
କେଉଁଠି ଥାଏ ସେ ସୃଜନର ମୂକ ଋଷ୍ୟଶୃଙ୍ଗ
ତାକୁ ଖୋଜୁଥିବା ଚକ୍ଷୁ ପ୍ରାପ୍ତ ହୋଇ ନଥାନ୍ତି ଅବଗତ
ସ୍ୱପ୍ନ ଭବିଷ୍ୟତକୁ ଦେଖାଇଥାଏ ଓ ଅତୀତକୁ ବି !

ସ୍ୱପ୍ନ ଯେ କ'ଣ ଓ କ'ଣ ଯେ ନ ଦେଖାଇ ପାରେ
ନ ଦେଖିଥିବା ଅସମ୍ଭବ କଳ୍ପନାକୁ ବି
ସ୍ୱପ୍ନ ଅସ୍ତିତ୍ୱ ନୁହେଁ, ସ୍ୱପ୍ନାବସ୍ଥା ପ୍ରାପ୍ତ ଦୃଷ୍ଟି
ସ୍ୱଭାବର ଆକୃତି ଏବଂ ପୁଣି ଭୁଲ ପ୍ରତିକୃତି ।

ସ୍ୱପ୍ନ ଦୃଷ୍ଟ ଓ ଅଦୃଷ୍ଟ, ପଦାର୍ଥର ପ୍ରତିରୂପ;
ଭୟଙ୍କର ମିଥ୍ୟାର ଅବତାର ତତ୍ତ୍ୱ, କଳ୍ପନା ତା' ବୀଜ
ସ୍ୱପ୍ନ କିଛି କ୍ଷଣ ପ୍ରାଣକୁ ବାନ୍ଧିବାର ଏକ ଅପପ୍ରୟାସ
ଏକ ଅଣାୟତ ତତ୍ତ୍ୱ, ରୂପମୟ ନିର୍ଜ୍ଜନତାର ଅରୂପ ପ୍ରକୋଷ୍ଠ ।

ସ୍ୱପ୍ନ ମୋଚନ କି ଉନ୍ମୋଚନ ନୁହେଁ, ମୋହର ପ୍ରମାଣ
କେତେବେଳେ ମହୁର ମୁହାଣ ତ କେତେବେଳେ
ଉଦ୍ଦେଶ୍ୟହୀନ ଗୂଢ଼ ଉତ୍ପାଦନ
ପ୍ରାଣ ଓ ମନର ସତ୍ତାକୁ କରିଥାଏ ଆଚ୍ଛନ୍ନ ।
□□

# ସାବିତ୍ରୀ

ଖଂଡବୋଧ କେତେବେଳେ
ଏକ ଅଖଂଡବୋଧର ହୁଏ ଅଂତର୍ଗତ ?
ପ୍ରକୃତି ଯେତେବେଳେ ହୁଏ କର୍ମୋନ୍ମୁଖ
ହୋଇଥାଏ କ୍ରିୟା ରୂପ !

କର୍ମର ପ୍ରକୃତ କର୍ତ୍ତା ପ୍ରକୃତି
ମୁଁ ତ ଭୃତ୍ୟଟିଏ, କେବଳୈଃ ଇନ୍ଦ୍ରିୟୈଃଅପି
ଯୋଗଯୁକ୍ତ ପୁରୁଷ କର୍ମଫଳ ତ୍ୟକ୍ତ୍ୱା
ଶାଂତିମାପ୍ନୋତି !

ମୁଁ ତ ପାଇଲି ନାହିଁ କିଛି, ସୁଖଂବଶୀ;
ଅଶ୍ରୁରେ ଧୋଇ ଦେଲି ଆଶାର ନେଂଜରା ଲଗା
ଆଖି ଦୁଇଟି ! ତମେ ତ ଦିଅ ନାହିଁ କିଂବା
ନିଅ ନାହିଁ କିଛି ! କର୍ତ୍ତୃତଂ ଲୋକସ୍ୟ !

ସଂସ୍ପର୍ଶଜାଃ ଭୋଗ, ଦୁଃଖ ଯୋନୟଃ,
ପ୍ରିୟପ୍ରାପ୍ୟ କାମୀ ମୁଁ ଅଜ୍ଞ, ସଂସ୍ପର୍ଶଜାତ
ଭୋଗର ଯୋନି ଦୁଃଖ, ରହିଚି ତା' ଆଦି ଅଂତ;
ସୁଖମକ୍ଷୟମଶ୍ନୁତେ, ତତ୍ କିମ୍; ମନ ଜାଣିଛି ?

ଆଦିତ୍ୟବତ୍ ତତ୍‌ଜ୍ଞାନ, ବିଦ୍ୟା ବିନୟ ସମ୍ପନ୍ନ
ପୃଥକ୍ ସତ୍ତା ନୁହେଁ ସୁଖ ଦୁଃଖ ଭାଗୀ ମୂର୍ତ୍ତି
ଦିନରାତିପରି ବିଷୟ ବିଜ୍ଞାନରେ ଜଳୁଛି
ଅବିଷୟ ଗୁହ୍ୟତମ, ସ୍ୱପ୍ନଶୀଳ ମୁଁ ଶୋଇଛି !

ଅନେକ ଜନ୍ମ ସଂସିଦ୍ଧି, ଜିଜ୍ଞାସୁରପି, ଅଶ୍ରଦ୍ଧାବାନ ମୁଁ
କେମିତି ଉଠିବି ଶ୍ରୀବିଷ୍ଣୁଭୋଗ ମଂଦିର ପାବଚ୍ଛ ?

ଯଦି 'ଅ' ବନାଗ୍ରୟ ତେବେ ଶୂନ୍ୟ କ'ଣ ଘଟସ୍ତନ
ସେହି ପଦ୍ମ ସୁଷୁମ୍ନା ମୁଖ ସଂଲଗ୍ନ ପୃଥ୍ୱୀଚକ୍ର ଦୀପ୍ତିମାନ

ସକାମୀ କି ନିଷ୍କାମୀ ନୁହେଁ ଟଗର ପୁଷ୍ପଟିଏ
ତା' ସମସ୍ତ ପାଖୁଡାରେ ଘଂବୀଜ, ଶୁକ୍ଲାମ୍ବରଧରା,
ତ୍ରିନେତ୍ରା, ରମ୍ୟା, ଶ୍ୱେତମୁଖୀ। ତମେ ତ
ବେଲପତ୍ରଟିଏ। ଷୋଡଶ ବର୍ଷୀୟାମ୍, ଧଂ।

ଥଂ ଓ ଦଂ'କୁ ଟପି ଯିବା ପରେ 'ସମାନ'
କୁମ୍ଭକରେ ପୂର୍ଣ୍ଣ। ଉଜ୍ଜ୍ୱଳାଙ୍ଗୀ ଶ୍ୟାମା
ଶ୍ରୀବିଷ୍ଣୁଙ୍କ ଯୌବନ, ମଂ ପ୍ରଭଂଜନ କୃଷ୍ଣା
ଜ୍ୟୋତିର୍ମୟୀ ଚ଼ତୁଷ୍କୋଣୀ ମୋ କବିତା, 'ସାବିତ୍ରୀ'।

ଇଡା, ପିଙ୍ଗଳା ଓ ସୁଷୁମ୍ନା ମଧ୍ୟସ୍ଥଳରେ ସରସ୍ୱତୀ
କୁଂଦପୁଷ୍ପ ପ୍ରଭା ଦ୍ୱିଭୁଜା, କେବଳ ଅଶୂନ୍ୟ
ଏକ ଦୀର୍ଘ କୃଷ୍ଣ ବସ୍ତ୍ର ମୁଁ, ଉଲଗ୍ନ ଅଗ୍ନିକୁ
ଆଲିଙ୍ଗନ କରିଛି। ବୃତ୍ତି ନିରୋଧ ଘଟିଛି ?

ଆଉ ଆଗକୁ ବ୍ୟାପିବ ନାହିଁ ତ୍ରିକାଳ,
ଜ୍ଞେୟଗୁଡିକର ଜ୍ଞାତା ଜଣକ ସଦ୍‌ବସ୍ତୁ ହେବ ?
ନାଭିପଦ୍ମରେ ଲିପ୍ତ ପୂରକଟି ରେଚକରେ ସମର୍ପିତ,
ପ୍ରାଣ ନିଶ୍ଚିନ୍ତ, ଆଉ ଆଗକୁ କାହିଁ ପଥ ?

ତମକୁ ସମର୍ପି ଦେଲି ମୋକ୍ଷ, ବ୍ରହ୍ମଭୂତ
ପ୍ରସନ୍ନାତ୍ମା ମୋ। ତମକୁ ସମର୍ପି ଦେଲି
ସମସ୍ତ ସାତ୍ତ୍ୱିକ ପାପ ସମ୍ଭବ ମୋ। ମିନତି:
ନିଅ ମହାମାୟାଙ୍କ ଗ୍ରନ୍ଥି ଭେଦ, ତତ୍ ଏବଂ ସତ୍।
□□

# ନାରୀ

ପବନ ଘାସ ଦ୍ୱାରା ଆବୃତ୍ତ ଖଣ୍ଡେ ସମତଳ ଭୂମି
ବୁଂଦାଏ ଜହ୍ନ ଯେମିତି ଗୋଟାଏ ମାଛର ହଳଦିଆ ଆଖି
ଆକାଶ ମୋ ମାତୃଭୂମି, ଏତେ ଉଚ୍ଚ ଯେ
ତାକୁ କେହି ଛୁଇଁ ପାରିବେନି।

ଓ୍ୱାଇଜର୍ ଭାବନାମାନଙ୍କୁ ଆଣ, ସେମାନେ ବସନ୍ତୁ
ତମେ କହୁଚ କିଛି ?
ଟଙ୍କାକୁ ଟିପରେ ବଜାଇଲେ ଠନ୍ କିନା ଶୁଭୁଚି
ଭଙ୍ଗା ଛୁରୀରେ କିଏ ଭଲ ପାଇବାକୁ କାଟିଛି
ଯେମିତି ଗୁଆକୁ ଗୁଆକାତି।

ମେରୀ ଥଟ୍, ଅପର୍ଣ୍ଣାର ପଦ୍ମକଢ ସ୍ତନ ଯୋଡ଼ିକ
'ଫ୍ରୀଡମ୍' ପରିବର୍ତ୍ତେ ସିଏ ଲେଖିଚି 'ସେଲ୍‌ଡମ୍'
'ସିଜେଲ୍' ପରି ଯେମିତି ଗୋଟେ ଚକ୍ଷୁ ଔଷଧ
ତମ ମୁହଁ।

ଓଢଣାଛାଦିତ ଗୋଟିଏ ସୁଂଦର ମୁହଁ କାହାର ଆବଶ୍ୟକ,
ମୋର ନୁହେଁ।
ବିଜ୍ଞାପନ ଦାତାର ଛବିଟିଏ ଦରକାର,
ଦରକାର ସୁଇଟେଷ୍ଟ୍ ହୋପ୍, ବଲଫପରି ଜଳୁଥିବ।

ବଉଦ କ'ଣ ସେମିତି ଖଣ୍ଡେ ଖାଉଟି ଦ୍ରବ୍ୟ
ବିକିବେନି ଚିତ୍ର, ମନା କଲେ ଭାନ୍‌ଗୋଘ
ଯାହା ଇଲାଷ୍ଟିକ୍ ଓ ଡାଇନାମିକ୍ ତାହା ସଂସ୍କୃତି
ଯାହା ସ୍ଥିର ତାହା ସୁନ୍ଦର, ଅସୁନ୍ଦରର ବି ପ୍ରାଣ
ପ୍ରାଣ ତଳେ ଆଚ୍ଛନ୍ନ ଆତ୍ମାର ଲକ୍ଷଣ।
ମାତ୍ର ଏବେ ଚିତ୍ରଟି ପଣ୍ୟ।।
□□

# ସଂପର୍କର ପାନଟି ଲାଲ

ହିମାଳୟର ଅସ୍ତିତ୍ୱ ସହିତ
ମୋ ଆତ୍ମାସତ୍ତାର ଘଟୁଚି ମିଳନ
ହିମାଳୟର ନିଶ୍ୱାସ ଥରକୁ ଥର
ଅନୁପ୍ରବେଶ କରି ମୋ ହୃଦୟକୁ
ତା' ଆଂଗୁଠିରେ ଦେଉଛି ସ୍ପର୍ଶ ।

ମନୁଷ୍ୟ ହୃଦୟ
ଏକ ମୁହଁ ଖୋଲା ଧଳା ଲଫାପା,
ଥାଏ ଖାଲି ।
ତା' ଭିତରେ ରହେ ମାତ୍ର ଗୋଟିଏ ଜିନିଷ
ତା' ହେଲା ଭଲ ପାଇବା ।

ଭଲ ପାଇବା ଭର୍ତ୍ତି ହୋଇଗଲେ
ଲଫାପାଟା ଦିଶେ ଗୋଲାପୀ
ନାଲିପାନପରି ତାକୁ ଆଙ୍କିଛନ୍ତି ଚିତ୍ରୀ

ହୃଦୟର ପଦ୍ମ ପୁଷ୍ପଟି ଚିରକାଳ ତୃଷିତ
ଯେତେ ପ୍ରାପ୍ତି
ଲାଭ କଲେ ବି ତୃଷା ତା' ହୁଏ ନାହିଁ ପ୍ରଶମିତ
କେଉଁ କାଳୁ ଅଭୁକ୍ତ
ଗୋଟିଏ ଶୁଷ୍କ ନରମ ସ୍ପଂଜପରି ତା' ଅସ୍ତିତ୍ୱ

ଆଶା ଓ ଭର୍ତ୍ତି ଆକାଂକ୍ଷା
ଚକ୍‌ଚକ୍ ହୃଦୟର ଆଖି ଯୋଡ଼ିକ
ଗୋଟିଏ ଚାତକ
ଚାତକ ପକ୍ଷୀଟି କାମ ମୋହିତ ।

ତୁମେ ଏବେ କେଉଁଠି ଅଛ ? ଥାଅ, ଥାଅ ।

## ବିଶ୍ୱାସ

ଗୋଟିଏ ବିଶ୍ୱାସ
ବ୍ରେସିୟରପରି ବାନ୍ଧିଥାଏ ଆକର୍ଷକ କରି
କଳ୍ପନାକୁ, ମିଠା ଚିତ୍ରକଳ୍ପକୁ;
ଗୁଡ଼ିକୁ ଉଠିବାକୁ ହେବ ପବନର ଡେଣାରେ
ପୁଣ୍ୟଲୋକକୁ ଓ ଆସନ୍ତା ଜନ୍ମକୁ !

ଜନ୍ମାନ୍ତର ତମ ହିସାବଖାତାର ସୁଧକଷା
ତମ ସାଙ୍କେତିକ ଅଙ୍କର ସୂତ୍ର
ଭୟ ତମ ଐକିକ ଐତିହ୍ୟ
ଜୀବନ ତ ଚିରନ୍ତନ ମାନସାଙ୍କ
କେତେବେଳେ ଭାଜ୍ୟ ଛିଣ୍ଡିଯାଏତ
କେତେବେଳେ ଭାଗଶେଷ ନୀଚ ଯୋନି ପ୍ରାପ୍ତ୍ୟ !

ପ୍ରେମ ପାଇ ନଥିବା ଯୁବତୀମାନଙ୍କ ପରି
ଆତ୍ମାର ପୋଷାକ ଏତେ ଟାଇଟ୍
କଲର୍ କେବଳ ଡୀପ୍ ଡାର୍କ
ତ କେତେବେଳେ ଧବଳ ଚକ୍‌ଚକ୍
ଜୀବନ କରୁଥାଏ ଅମଳ
ମାତ୍ର ଦୁଇଟି ଫସଲ !

ମିଳନ ଓ ବିଚ୍ଛେଦ, ପ୍ରେମ ଓ ନିଦାଘ;
ପାପୁଲି ଦୁଇଟି, ଗୋଟିଏ ଅର୍ଘ୍ୟ
'ବିଶ୍ୱାସ' ।

ଏ ବିଶ୍ୱାସକୁ ମୁଁ ସମର୍ପିତ କଲି ତୁମକୁ
ମୋ ପାପ ଓ ପୁଣ୍ୟ ନିଅ
ନିଅ
ମୋ ପ୍ରେମଭର୍ତ୍ତି ଦିହ !

ପୁନର୍ଜନ୍ମ ଓ ଜନ୍ମାନ୍ତର ଦିଗ୍‌ବଳୟରେ
ମାଟି କିଂବା ଆକାଶ, ଯାହା ତୁମ ଇଚ୍ଛା
ଦିଅ, ମତେ ଦିଅ !
ନଟେଇରୁ ଡୋରକୁ ଛିଣ୍ଡାଅ !
□□

## ବିଧାନ

ବିଶ୍ୱାସ ମୋର ଛାୟାଗ୍ରସ୍ତ
ନିର୍ଭରଟି ମୋର ସଂଶୟର ଚୋଟରେ ରକ୍ତାକ୍ତ
ମାର୍ଗଦର୍ଶକ ସିଦ୍ଧାନ୍ତକୁ ଆହ୍ୱାନ କରୁଛି
ଯାବତୀୟ ଅତିକ୍ରାନ୍ତ !

ନିୟନ୍ତ୍ରଣଟି ଜୀବିତ ଅଛି ତ ?
ତା'ହେଲେ କେମିତି ସଂଜ୍ଞା ହରାଇଲା ନିତ୍ୟନୈମିତ୍ତିକ
ନ୍ୟାୟ ଅବଶ ହୋଇଗଲା ନୈରାଶ୍ୟ ସାମ୍ନାରେ
ସତ୍ୟକୁ ସିଝାଇ କ୍ଳେଶ ବାଢ଼ିଲା ବିଫଳ ପ୍ଲେଟରେ

ତମେ ଅଛ ? ଅନୁଭବମୟ ବିଶ୍ୱାସର ବୈକୁଣ୍ଠରେ
ପ୍ରୟାସର ପୂର୍ଣ୍ଣଯୋଗରେ, କର୍ମର ନାଭିଶିଳାରେ ?
ଥାଅ !
ଥାଅ, ତମେ ତମ ମଧୁଶଯ୍ୟାରେ
କାର୍ଯ୍ୟକାରି କରୁଥାଅ ତମ ସନ୍ତୋଷମାନଙ୍କୁ;

ଅହଂ ଜର୍ଜର ଆୟତକ୍ଷେତ୍ରର ଦାବୀ କ'ଣ
କିଛି ମାଗୁନାହିଁ ପ୍ରତିବିମ୍ବିତ ଆକାଂକ୍ଷା ଓ ବ୍ୟକ୍ତିତ୍ୱ
ତମର କ୍ରିୟାତ୍ମକତା ନଷ୍ଟ ସାମର୍ଥ୍ୟ
ତା'ହେଲେ ଏ ଚନ୍ଦ୍ର ସୂର୍ଯ୍ୟ ? କେବଳ ଭୂଗୋଳ !!

ଭୌତିକ ପ୍ରକୃତିର ପ୍ରବୃତ୍ତି ?
ବୃହତ୍ତର ଉନ୍ମୁକ୍ତ ଆଗ୍ରହ କଳ୍ପନାର କୌଶଳ ?
ଅସହାୟ ପାଇଁ ଅନନ୍ତର ବିଚରଣ ମିଛ
ବଂଚିବାର ସମ୍ପଦଟି କେବଳ କ୍ଳେଶରେ ନିର୍ମିତ ?

ସତ୍ୟ, ଧର୍ମ ଓ ନ୍ୟାୟକୁ ବି ଛଡାଇ ନେଉଛି
ପ୍ରଭୁତ୍ୱର କର୍ତ୍ତୃତ୍ୱ !
କେତେ ଅସହାୟ ଜୀବନର ଆୟତକ୍ଷେତ୍ର
ବିଧାନ, ତମେ ଅଛ ତ ?
□□

# ମୃଗୀ ନଚାଏ ନରହରି

॥୧॥

ଗୋଟିଏ ସଫେଦ୍ ଶବ୍ଦ ଭାଙ୍ଗିଦିଏ
ଶାଶ୍ୱତ ନୀରବତା,

ଓହ୍ଲାଏ କବିତା
ସୁସ୍ପଷ୍ଟ ସ୍ଫଟିକର ଆକୃତି
ଅତିକ୍ରମ କରି
ମହିମାର ଦିବ୍ୟଦ୍ୟୁତି ଦ୍ୱାର
ପୃଥିବୀ ତା' ଘର
ବିସ୍ମୟକର ଏବଂ ବିସ୍ମୟତମ ଜୀବନ
ସ୍ୱର୍ଗୀୟ ସୁଖର ଚୁମ୍ବନ
ସର୍ବୋତ୍ତମର ପସଂଦ;

ଶବ୍ଦ, ସେଇ ଶବ୍ଦ।
ସତ୍ତାର ଗଭୀରତାର ଏକ ରକ୍ତ ପ୍ରବାଳ
ଅଗ୍ନିର ଆବେଗ
ଅଚିନ୍ତ୍ୟର ଉଲ୍ଲସିତ ମୁଖ;

ଅମାପ ଦୃଶ୍ୟ। ସ୍ୱଚ୍ଛ ଦିଗନ୍ତ, ଅରୂପ
ହୃଦୟର ସମୁଦ୍ରରୁ ଉଠି ଆସିଥାଏ
ଅନନ୍ତକୁ ଭେଟିବା ସଂକଳ୍ପ;
ଓ ତା'
ଛାୟାହୀନ ପରିଣାମବାଦ।

॥୨॥

ଅସ୍ପଷ୍ଟ ଆଶା ଅଳନ୍ଧୁପରି ହେଲିଛି
ପ୍ରମାଦ ଠିଆ ହୋଇଛି ବଖରା ମଝିରେ
ଆଧ୍ୟାତ୍ମିକତାର ଅଶ୍ୱତ୍ଥ ବୃକ୍ଷଟି ମୃତ

ଆସୁରୀ ପରାକ୍ରମଶାଳୀ ଏବେ ଈଶ୍ୱରୀ
'ମୁଁ'ର ମାଲିକାଣୀ !

ପ୍ରସ୍ତୁତି ଓ ପରିପକ୍ୱତା
ଆନଂଦ ଓ ପ୍ରେରଣାର ଶାଖାରୁ ଖସି ପଡୁଛି
ପ୍ରବୃତ୍ତି ପଥରେ ନେତୃତ୍ୱ ଗ୍ରହଣ କରିଛି ଜଡତା
ଏମିତି ଗୋଟିଏ ଆକାର
ଓ କ୍ରିୟାଶୀଳତାର ପର୍ଯ୍ୟାୟ
ଚାହେଁ କିଏ ?

କେଉଁ ସୂତ୍ର ଦ୍ୱାରା ଫିଟୁଚି ବାଟ
ମତେ କୁହ,
ମହତ୍ୱପୂର୍ଣ୍ଣ ସେ ନବ ସମ୍ଭୂତ
ବଂଚିବାର ଏଇ ନିର୍ଯ୍ୟାତନା ଭିତରୁ
ମୁଁ ଫେରିଯା'ନ୍ତି !

କିଳା କବାଟ ଆରପଟକୁ
ପ୍ରବୃତ୍ତିମାନଙ୍କ
ଆଗ୍ରହ ଓ ଉଦ୍ଦୀପନାର ସଂସ୍ପର୍ଶ
ସେପାଖକୁ !

||୩||
କେହି ତ କେଉଁଠି ନାହିଁ, ଯେତେ ଡାକୁଥାଉ ଗଜ
ଯେତେ ବିକଳ ହେଉଥାଉ ମୃଗୁଣୀ
ସୌନ୍ଦର୍ଯ୍ୟାନୁଭୂତିଗତ କୌଶଳରେ ଗଢା କାହାଣୀ
କୋଟି ବସ୍ତ୍ରଦାନ ପୁରାତନ ପର୍ଯ୍ୟାୟ ଚମକ

ଚରମ ସୀମାରେ ଜୀବନର ଯୌବନୀ ଦ୍ରୌପଦୀ
ସୀତାପରି ପଶିଚି ଅଗ୍ନିର ଯୂପରେ

ମାନବୀୟ ଅସ୍ତିତ୍ୱ ସିଏ
ଆଉ ପ୍ରମାଦମାନଙ୍କୁ ଗଣୁ ନାହିଁ।

ନୈତିକହୀନ ରୋମ୍‌ପରି ଜଳୁଛି
ଲୟଠାରୁ ବିଳୟର ଅନୁରାଗକୁ ମାପୁଛି
ଯେଣୁ ବଂଚିବା ଇଏ

ଏହାରି ନାଁ'ଜୀବନ। ଏଇ ଜୀଇବା,
ମୁଁ ଜୀଉଛି।
□□

# ଅସୀମର କରାଟରେ ମଥାମଣି

ଶ୍ରୁତସ୍ୟ ଶ୍ରୁତମ୍....., ନିରଂତର ଭିତରେ ନିରଂତର
ଭାବନାମାନ ଭାସୁଥିଲେ। ସମୁଦ୍ର ମଧ୍ୟରେ
ମସୃଣ ଓ କଠିନ ଗୋଟିଏ ମୁହଁ, ମନର ଅନୁକ୍ରମଣିକା
ବିସ୍ମୟର ଦେହ, ଭାସ୍କର୍ଯ୍ୟମୟ ଭାବନା ଅନଂତକାଳ

ବ୍ରେକିଂ ଦି ସାଇଲେନ୍ସ ଅଫ୍ ଦି ସି'ସ୍
ବୃଦ୍ଧ ଅସୁଖ, ନ୍ୟାୟ ଅସଂଗତର ଚିତ୍କାରିତକଂଠ
ଅନିତ୍ୟମ୍ ଅସୁଖମ୍ ଲୋକମ୍ ଇମାନ୍ ପ୍ରିପୟା ଭୋସ୍ୱ ମାମ୍
ମିଶ୍ରିତ ଦୁଇ ଉପାଦାନ, ଊର୍ଦ୍ଧ୍ୱାୟନ ଓ ନିମ୍ନ ପ୍ରାଣର ଦାବୀ

ଏ ଗେଟ୍ ଅଫ୍ ଡ୍ରିମ୍ସ ଅଯାର ଅନ୍ ମିଷ୍ଟୋରୀସ୍ ଭର୍ଜେ
ଅନ୍ଧଖୋଲା ରହସ୍ୟର ପ୍ରାନ୍ତ, ଯେମିତି ବୌଦର ଫାଙ୍କ
ଅଦେହ ଅସୀମ ଉଙ୍କି ମାରୁଛି ଯେମିତି ଚିରୁଡାଏ ଚଂଦ୍ର
ତା' ଭିତରେ ଉଚ୍ଚତର ମନର ଇନ୍‌ସିପିରେସନ୍ ଅତିକ୍ରମ କରୁଛି

ଜାହାଜ ଲାଗିଲା ଯାଇ ପ୍ରବାଳ ଦ୍ୱୀପରେ
ଏବଂ ତା'ପରେ ମଳୟଦ୍ୱୀପ, ଅଫ୍ ମ୍ୟାନ୍ସ ଫାର୍ଷ୍ଟ-
ଡିସ୍‌ଓବିଡିଏନ୍ସ ଏଣ୍ଡ୍ ଦି ଫ୍ରୁଇଟ/ଅଫ୍ ଦାଟ ଫରବିଡେନ୍
ଟ୍ରୀ... !ସୁସ୍ପଷ୍ଟ ଭାବରେ ଲେଖା ତମ ନାଁ' ! ଗତିଶୀଳ...

ସମୟର ପଛପଟ କଳା ରାଜ୍ୟ
ସୂର୍ଯ୍ୟର ସାମ୍ନାପଟ କାଳ ରାଜ୍ୟ, ବିପରୀତ ଦୁଇସ୍ତର
କଳ୍ପନାର ଦୁଇପାଦ ଗତିଶୀଳ, କବିତା ଟାଣିଛି ରେଖା
ଦୁଇପଟେ ଦୁଇଟି ନାଁ' ତମ ଓ ମୋର।
□□

# ଭାବନାର ସତକ

ସମସ୍ୟା ସବୁବେଳେ ନୂଆସୃଷ୍ଟି,
ବେଦନାଠାରୁ ନ୍ୟୁନ କମ୍ କ'ଣ ତା' ଉଦ୍ଦେଶ୍ୟ;
ସମସ୍ୟାର ମୂଳ ଲକ୍ଷ୍ୟ ମର୍ତ୍ତ୍ୟ ଜୀବନ-ଦୁଃଖ;
ନାନା ଦିଗରୁ ବଂଚିବାକୁ ଦିଏ ଆହ୍ୱାନ।

ଦୂରକୁ କ୍ରମେକ୍ରମେ ଘୁଂଚି ଯାଉଛି ଅନୁଭବ
ସଂକଟର ଡାଳଗୁଡ଼ିକ ସୁପ୍ରସାରିତ ଚାରିଆଡକୁ ସ୍ୱଚ୍ଛଂଦ
ଉପେକ୍ଷା ରଖୁ ନାହିଁ ପ୍ରୟାସକୁ
କେବଳ ଇସାରାରେ ଅତିକ୍ରମ କରୁଛି ଚେତନାକୁ।

ଆଖ୍ୟାନର ଅନୁକୂଳଟିଏ କୂଳପରି ଲମ୍ବିଛି
ପରିସମାପ୍ତିର କବାଟଟି ଝାପ୍‌ସା ଭିତରେ କେଉଁଠି,
ଅସ୍ଥିରତାର ଝରକାଗୁଡିକ ତ ଖୋଲା ଅଛି,
ଅଥଚ ଅପୂର୍ଣ୍ଣତା ପ୍ରତ୍ୟାଖ୍ୟାନ କରୁଛି ଅଧିକାରକୁ।

ସମସ୍ୟା ଜୀବନ ପ୍ରକୃତିର ଆତ୍ମା
ସମସ୍ୟା ସାମାଜିକ ବ୍ୟବସ୍ଥାର ନିଜ ପ୍ରାଣ, ନିଜ ସତ୍ତା,
ସମସ୍ୟା ହିଁ ଏକମାତ୍ର ଅନୁପ୍ରବେଶ
ଅନୁଭୂତିକୁ କରେ ତ୍ରାଣ, ଯେମିତି ସେ ନିଜେ ଖ୍ରୀଷ୍ଟ।

ସମସ୍ୟାମାନଙ୍କ ଅନୁଗାମୀ ନୈରାଶ୍ୟ
ସେମାନେ ଟିପି ରଖୁଛନ୍ତି ଅସୁବିଧାମାନଙ୍କ ଆକ୍ରୋଶ
ଅନୁଭବମାନଙ୍କ ସୁଖ ଦୁଃଖର ବେଗ, ଏତେ ତୀବ୍ର ?
ପାରାଲିସସ୍‌ଗ୍ରସ୍ତ ଊର୍ଦ୍ଧ୍ୱାୟନ, ପଙ୍ଗୁ ଆଧାତ୍ମିକ।।

ଅଭୀପ୍ସାର ମହିମା ମିଛ ! ଆବାହନ ନିର୍ଭୁତା ସ୍ୱପ୍ନ ?
କପଟତାର ତୀକ୍ଷ୍ଣ ଛୁରୀରେ ଚିରୁଛି ପ୍ରାର୍ଥନାର ବେକ
ପେଶାଦାରୀ ଅବତରଣ ପ୍ରତ୍ୟାଖ୍ୟାତ, ଐକାନ୍ତିକତା ରକ୍ତାକ୍ତ
ଯେଣୁ ଭକ୍ତି କଳ୍ପନା ଓ ଭାବ ଆବେଗ ପ୍ରଦୂଷିତ !

ତମେ ତ'ନାହିଁ' ଟିଏ କେମିତି 'ହଁ'କୁ ଟେକିବ ହାତ
ଫାଟି ଯାଇଛି ମୋ ହୃଦୟ ସାର୍ଟର ପିଠିପଟ
ଓ ଜୀବନ କୋଟର ସାମ୍ନା ହାତ ! ଆସ ଆସ;
ସମସ୍ୟାର ତରୁଣୀମାନେ
ଦୁଃଖର ତରୁ ତଳେ ମତେ ଠାରୁଛନ୍ତି ହାତ !
□□

# ଆୟତ ଆୟତନ

ସ୍ୱର୍ଗର ବଗିଚାଟିଏ ତମ କାମନା ସହିତ ସଂଲଗ୍ନ
ତମ ଇଚ୍ଛା
ବସନ୍ତଋତୁର ନିବୁଜ ବଗିଚା
ତମ ଭିତରେ ସୁନାଦିନୀ ସୁବର୍ଣ୍ଣର ଝରଣାଟିଏ
କବାଟ ବଂଦ ହୋଇ ରହିଥିଲା
ମୁଁ ଶୁଣିଥିଲି ତା'ଜଳ ଭୂପତନର ଧ୍ୱନି ।

ତମକୁ ଡାକିଥିଲି ଆସ, ସଂଗଚ୍ଛଧ୍ୱଂ
ଚାଲ, ସାଥୀ ହୋଇଯିବା । ସମାନା ହୃଦୟାନି ବଃ
ଏକ ହୃଦୟ ହୋଇଥିବା ।
ସଙ୍ଗବଦ୍ଧ ମୁକ୍ତି ସ୍ୱପ୍ନ ସାଙ୍ଗ ହୋଇ ଭୋଗିବା

ସ୍ୱଧର୍ମଗତ ପ୍ରବେଗ ଏକ ହୃଦୟ ହୋଇ ଧରିବା
ତୁମେ ପ୍ରଦୀପ୍ତ ପ୍ରଜ୍ଞା
ମୁଁ ନିଃସଙ୍ଗ ସମାବେଶ ବହୁର ଅଂଶ
ବର୍ତ୍ତମାନର ପାର୍ଥିବ ମୂର୍ତ୍ତି ଅମୃତ । ତମ ଅତୀତ ମୃତ ।

ଆଚରଣ ସମ୍ମୁଖ ଉଦ୍ଦେଶ୍ୟତୁମକୁ ଦେଲା ନିର୍ଦ୍ଦେଶ,
'ଯାଅ' ।
ଏକୀଭୂତ ସମୃଦ୍ଧ ପ୍ରତିଷ୍ଠା ତୁମ ପ୍ରତିଷ୍ଠାନ,
କାହା ନିବେଦନ ନୁହେଁ ତୁମ କର୍ମର ବିଧାନ ।
'ଯାଅ' ।
ସମ୍ମୁଖରେ ଅନୁପ୍ରେରଣା ଓ ଉଦ୍‌ବୋଧନ ।

ତୁମେ ଗଲ । ତୁମ ସହିତ ମୁହୂର୍ତ୍ତମାନେ ବି ଗଲେ
ଏବଂ କିଛି ରହି ଗଲେ ମୋ ପ୍ରକୋଷ୍ଠରେ

ପରିଣତ ପରିଣାମ ସହିତ ରଫା କଲେ ନାହିଁ
ନିର୍ଦ୍ଦୋଷ ସମସ୍ୟା ପରି ତମ ଗତିର ଆକୃତି,

ହେ ଋତୁ, ଯାଅ ! ଏବେ ଯାଅ !
ତମକୁ ଆଉ ଡାକୁ ନାହିଁ ଆନୁକୂଲ୍ୟ ଇଙ୍ଗିତ
ଉନ୍ମୁକ୍ତ ଦ୍ୱାର ଦେଇ ଦିଶୁଛନ୍ତି ଗ୍ରହ ଓ ନକ୍ଷତ୍ର
ବିଚ୍ଛିନ୍ନ ଅନନ୍ତ
ପ୍ରେରଣାରେ ପ୍ରସାରିତ ପ୍ରତିଟି ମୁହୂର୍ତ୍ତ
ଏବଂ ପୂର୍ଣ୍ଣ ପ୍ରୟାସ
ଅତିମାନସିକ ସୁଖ ଓ ସୌନ୍ଦର୍ଯ୍ୟରେ ମୂର୍ତ୍ତ
ଭବିଷ୍ୟତ ଭବିଷ୍ୟତ ହୋଇ ଆଉ ନାହିଁ,
ବର୍ତ୍ତମାନର ଆୟତନରେ ଦୀପ୍ତ ।
□□

## ସଂଶୋଧନ

ଚହଲାଇ ଦିଅ ସୀମାବଦ୍ଧତାକୁ
ବ୍ୟାଧିତ ଉତେଜନାକୁ, କାମନାର କ୍ଷୁଧାକୁ,
ଲଳିତ ଭୌତିକ କ୍ରିୟାମାନଙ୍କ ବିସ୍ତାରକୁ,
ବସ୍ତୁରେ ପରିଣତ ହୋଇଯାଇଛି ବିଶୃଙ୍ଖଳା ।

ଆଉ ଧୋବ ଲୁଗା କାହିଁ
ଯେଉଁ ଚୌକୀରେ ବିପୁଳ ବସିବା କଥା
ସେଠି ବସିଛି ତୀବ୍ରତୃଷ୍ଣା
ହ୍ୱାଟସ୍ଅପ୍ ଖୋଲି ଦେଖୁଛି ପ୍ରାଣିକ ଆକାଂକ୍ଷା ।

ପ୍ରଭୁତ୍ୱ, ଅଧିକାର ଓ ଆଧିପତ୍ୟ
ତିନୋଟି ଝରକା ଖୋଲିଛି ଜୀବନାଙ୍ଗ ଭାବନା;
ଭାବନା ହିଁ ଭସାଉଛି ଲହରୀମାଳାରେ ଭୋଗ
ଯୁଆଡେ ଗଲେ ଘରିଆଡ ଗୋଟିଏ ଛବି । ।

ଭାବନା, ଗତିଶୀଳ ଆବେଗ, ସଂବେଗ ଓ ଇଛା
କେବଳ ପର୍ଯ୍ୟାପ୍ତ ଅସାର୍ଥକର ପ୍ରଗାଢତା
ସଂତପ୍ତ ପ୍ରାଣର ଆତ୍ମା, ସଂବେଗମୟ ସ୍ମୃତି,
ସତ୍ୟ ଅଲଂଘ୍ୟ ନୁହଁନ୍ତି । ଯାହା ଉଙ୍କୁଡିଛି ।

ଅସନ୍ତୁଷ୍ଟ, ନିରାଶ, ଅତୃପ୍ତି ପୀଡିତ ଶୋକ
ମନର କ୍ରିୟାଗୁଡିକୁ ମାଛ ପରି ଧରୁଚି, ଏତେ ମାଛ ?
ଏବଂ ଏତେ ଅବସାଦ, ଯାବତୀୟ କ୍ଷୁଦ୍ରତାର ସ୍ୱାଦ,
ଏତେ ଅସ୍ୱସ୍ତିମୟ ସ୍ଥାୟୀ ସାଲିଶ୍ । ।

ତମେ ମତେ ଦେଇ ପାରିଲ କେମିତି ?

ପାର୍ଥିବ ଜୀବନର ଠିକଣା; ଉପଲବ୍ଧିମାନଙ୍କୁ
କିଏ ଭୁଲ ଲେଖିଲା ?
ଶ୍ରଦ୍ଧା ଓ ସମ୍ଭାବନାମାନଙ୍କୁ/ମିଥ୍ୟାକୁ ଅନ୍ତିମ ସତ୍ୟ
ବୋଲି ପରିଚିତ କରାଇ ଦେଲା ?

ପରିପୂରକ ଭାବେ ଗଠିତ ପଦାର୍ଥଟି ଲାଗି
ମୋର ଅଭିଯୋଗ ନାହିଁ
ଭ୍ରାନ୍ତିର ନିଶ୍ଚିତତା ଠାରେ ମୁଁ ବଦଳାଉଛି ସିଦ୍ଧାନ୍ତ
ନୂତନ ଭୂମି, ଅନ୍ତଃସୁପ୍ତ ସ୍ମୃତି ଜାଗ୍ରତ ଖାଲି !

ଆରମ୍ଭ ବିନ୍ଦୁ ଆଲୋକମୟ ଓ ଆନନ୍ଦମୟ
ବିଷୟ ସଚେତନ ଇନ୍ଦ୍ରିୟ-ଚେତନା
ସଂଶୋଧନ କରେ ଅଭାବଗୁଡ଼ିକୁ
ଆନନ୍ଦ ଏବେ ଆକାଶକୁ ବ୍ୟାପୁ !
□□

# ଯୋଗକୁ

ଆହ୍ୱାନଟିକୁ ମାନି ନେଲ ?
ତୁମ ଅନୁଭବରେ ତାଲା ପଡିଚି,
ଅଜାତ
ଅସୀମ କୌତୁହଳର ବଂଧନ,
ସବୁଜ ସାମାଜିକ ରଶ୍ମିର କ୍ଷେତ
ପାଚିଛି ? ? ଯେମିତି ଚିହ୍ନା ନ ପଡିବା ମନ !

କଟା ଫସଲର ବାସ୍ନା
କ୍ଷେତସାରା କଳେଇ ଗଦାଗଦା
କେଂଡାରେ ପାଚିଲା ଧାନ
ଧାନେ ଧାନେ ସୁନା ?

ଅପହଂଚ ଆକାଶ ଆଡକୁ ଅନାଇଥିଲେ
ଅପରିବର୍ତ୍ତିତ ସେମାନଙ୍କ ଭିତ୍ତି
ସ୍ୱପ୍ନ ରହିତ ସ୍ୱର୍ଗ ଧାନଗଛର ଜୀବନ
ଭାବନାର ସାଇକେଲ୍‌କୁ ଶୁଣ

ସତ୍ୟ ସଂପାଦିତ ! ଆତ୍ମାର ଏହା ଆରୋହଣ
ଯାହାକୁ ମୁଁ କହୁଛି ଜୀବନ !

□□

# ତିଆରି

ଜ୍ଞାନର ପ୍ରତ୍ୟେକ ଦ୍ୱାର ଦେଇ
ଜୀବନ ଦୌଡ଼ିଲା
ଦେଖିବାକୁ ଚଂଦ୍ର ମଂଡଳର ଧୂମାୟିତ ସ୍ୱର୍ଗ
ସ୍ୱପ୍ନିଳ ପବନ ହେଲା ପ୍ରତିଫଳିତ

'ଲଭ୍ ଇନ୍ ଦି ୱାଇଲଡରନେସ୍ ମେଟ୍ ସାବିତ୍ରୀ !'

ସୌନ୍ଦର୍ଯ୍ୟ ଓ ବିସ୍ମୟର ପ୍ରଚ୍ଛନ୍ନ ଦ୍ୱାରମାନ ଖୋଲିଗଲେ
ନିଜନୀତି ପରିବର୍ତ୍ତନର ଦିଗକୁ
କନକ ନିଳୟର ଡେଣା ହେଲା ଫଡ଼୍‌ଫଡ଼୍
ମଧୁର ମଂଦିରଟିଏ ସେ; ଏବେ ଉଡ଼ିବ ଭୂମି ଉପରେ ?

କିଂତୁ ସମୟର ରାସ୍ତା ଦୁଃଖପୂର୍ଣ୍ଣ ଖୁବ୍
ସମ୍ମାନୀତ ସମୟକୁ ବାଛି ନେଲା ପଛ ଘୁଂଚା
ଜୀବନ ଲୁଚିଗଲା ସୁବାସିତ ପୁଷ୍ପ ପ୍ରକୋଷ୍ଠରେ
ପବନରେ ବୁଣି ହୋଇଗଲା ମୟୂରୀ ସ୍ୱରର ମିଠା

ନୀଳକଂଠ ବୈରାଗୀ ଜଣେ ପ୍ରସ୍ତର ପାଲଟିଛି
ବ୍ରାହ୍ମଣୀୟ ଇଚ୍ଛାର ପରିଧି ତା' ଆତ୍ମା ଚାରିପଟ ଘୂରୁଚି
ତୁହାକୁ ତୁହା ବର୍ଷାପରି ହୁଳହୁଳି ପଡୁଛି
କୁହୁକ ପ୍ରବାହିତ ହେଉଛି ପ୍ରାକୃତିକ ରହସ୍ୟ ଭିତରୁ

ସଂସାର ତ ଲଂଗଳା ସନ୍ନ୍ୟାସୀ
ସିଏ କେମିତି ବୁଝିବ ବିଜୟର ଅଧାଗଢ଼ା ଗଳ୍ପକୁ
ଯିଏ କହୁଚ଼ ଦେଖିଚ, ନିଶ୍ଚୟ ଦେଖିଚ
ମାତ୍ର ତାହା ଅର୍ଦ୍ଧସତ୍ୟ, ଈଶ୍ୱରଙ୍କ ମିଛ ରୂପ !

ଯଦିଓ ଅଭିଯୋଗ ନାହିଁ, କେତେ ନିଃସଂଗ
କେତେକ ନିର୍ଜ୍ଜନ ଆତ୍ମାର ପରିବେଶ, ସ୍ୱପ୍ନର ସ୍ୱରୂପ
ନିଜଠାରୁ ନିଜେ ବିଚ୍ୟୁତ, ସୌନ୍ଦର୍ଯ୍ୟ ଠାରୁ ସୁଖ
ଭୋକଠାରୁ ଭାଗ୍ୟ, ଅଭିଳାସ ପୁଣି ଏଡେ ଅଂଧ ? ?
□□

# ହେମମାଳୀ

ସୁଯୋଗ, ସମୟ ଓ ସୌଭାଗ୍ୟ ନୁହେଁ ତ୍ରିଭୁଜ
ଗୋଟିଏ ବୃତ୍ତର ସକାଳ
ପରୀକ୍ଷାରେ ବିଫଳ ସ୍ୱରକୁ ଦୂରେଇ ନିଏ ଉଦ୍ୟମ
ଉତ୍କୃଷ୍ଟ ଓ ଆଡମ୍ବରପୂର୍ଣ୍ଣ ହେବାକୁ ଚେଷ୍ଟା କରୁଥିବା ପ୍ରଚ୍ଛଦ।

ସ୍ପଂଦନହୀନ ଗୋଟିଏ ଘୂର୍ଣ୍ଣନର ସବୁଜ ସାମଜିକ ଜ୍ଞାନ·
ଜ୍ଞାନ ଏକ ଶକ୍ତିଶାଳୀ ଆର୍ଟ, ଭୟଙ୍କର ତା' ଫୋର୍ସ
ଶବ୍ଦକୁ ଛୁଇଁ ଦେଲେ ବଦଳିଯାଏ କବିତାର ନିୟମ
ବଦଳିଯାଏ ଧ୍ୟାନୀର ଆସନ ତଳ।

ସମୟର ଚୋଟ ପ୍ରାଣର କଂଚା ଘା'କୁ
ବଦଳାଇ ଦେବ ?
ଶବ୍ଦର ପତ୍ର ଆଚ୍ଛାଦିତ ମାଟିପାତ୍ର ଭିତରେ ଭର୍ତ୍ତି
'ଅବିସ୍ମୃତ'।

ଭଂଗା ଉଲ୍ଲାସର ମୁଠା ମୁଠା ସଜଭାତ: ସେମାନେ
ପୃଥିବୀ ଦେଖିଛଂତି ? ଦେଖିଛଂତି ଆରୋପର ଖପୁରୀ ?

ଭୁଲି ଯିବା ହିଁ ଭଲ ପାଇବା
ସତ୍ୟର ଆଖି ଦୁଇଟି ନଷ୍ଟ, ସତେରେ ପ୍ରେମ କ'ଣ ଅଂଧ ?
ଗୋଟିଏ ନାମହୀନ (ଅନାମ)ର ଗୋପନ ନାମ 'ପ୍ରେମ'
ଦି ଯଏ ଅଫ୍ ଗଡ୍, ଏକ ଚିହ୍ନା ମତିଭ୍ରମ।

ଶେଷ ନାଗର ଶଯ୍ୟାରୁ ସତେରେ କ'ଣ ଉଠିଥାଂତି
ଶ୍ରୀବିଷ୍ଣୁ ଭଗବାନ ?

*ମେଘଦୂତର ଅଭିଶପ୍ତ ଯକ୍ଷର ନାମ 'ହେମମାଳୀ' (ବ୍ରହ୍ମବୈବର୍ତ୍ତ)।
▢▢

# ସ୍ୱସ୍ଥାନ

ଆଶ୍ଚର୍ଯ୍ୟର ବିଷୟ
ଦୃଶ୍ୟ ସକଳ ଜଡ ନୁହେଁ ଜୀବନ୍ତ
ସଂପୂର୍ଣ୍ଣ ମଗ୍ନ, ନୟନାଭିରାମ
ପ୍ରଫୁଲ୍ଲମନ, ଚଂଦ୍ର ବିଂଦୁ ସଂଲଗ୍ନ !

ଶକ୍ତିଙ୍କୁ ଅଭିଗମନ କଲେ ଶିବ
ବିଂଦୁର ଜନ୍ମ
ଶିବଙ୍କୁ ଅଭିଗମନ କଲେ ଶକ୍ତି
ଧ୍ୱନି ଉତ୍ପନ୍ନ !

ତୁ ତ ଗୋଟିଏ 'ଯୋଗାଡ'
ବିଦ୍ୱେଷଶୂନ୍ୟ ସଜ ତରକାରୀ
ଗୌରବର ବ୍ୟବସ୍ଥା କରିବ
ଏବେ: ପୂଜା, ନାଲି ଚା', ବଛାବଛି ସବୁ ଚଳିଯିବ !

ମଂଥନ, ମହାଜନ, ମାଲପତ୍ର-ଅପରୂପ ଦୃଶ୍ୟ
ପୂର୍ଣ୍ଣିମାରୁ ଅମାବାସ୍ୟା ପର୍ଯ୍ୟନ୍ତ
ରୁମାଲ ଓ ପେନ୍‌ସିଲ୍, ଦୀକ୍ଷିତ ସୁଯୋଗ
ବଡ ସମ୍ବନ୍ଧ ମିନିଟର ଗର୍ଭ ।

କ୍ଷୀଣରୁ କ୍ଷୀଣତର ଅନୁଭବ
ଆଡମ୍ବର ଅଚିହ୍ନା ଦୁର୍ବିପାକ
ଗଣିଗଣି ଆସିଛି ପକାଇ ତା' ପାଦ
ଦୃଶ୍ୟ ସକଳ ଦଂଶନ, ଅପଦେବତାର ଦାନ !

ପୃଷ୍ଠା ଓଲଟାଇଲେ ଅଜ୍ଞାନ
ମାତ୍ର-ପ୍ରଚ୍ଛଦଟି ଜ୍ଞାନ !
❐❐

## ହିରଣ୍ୟଜା ସୋମ

ଶରୀରର କେଉଁ ରହସ୍ୟମୟ କୋଠରୀରୁ
ଶବ୍ଦ ଆସୁଚି ?
ସଂଗମର ଅନୁଭୂତି...
ଆତ୍ମାର ଜାଗାରେ କିଏ ବସିଚି ?

ପାପର କଜ୍ଜ୍ୱଳ
ନା ମୋକ୍ଷ,
ସୁଂଦରୀ ସ୍ରୀଟିର ସବୁଠି ଉଲ୍ଲେଖ
ଯେମିତି ସଂଗୀତମୟ ଚିତ୍ର !

ପ୍ରେମ କ'ଣ ସୁଂଦରୀଟିଏ
ଅନୁଭବ କ'ଣ ପ୍ରକଟ ପ୍ରେମ ?
ନର୍କରୁ ବାହାରିଲେ ବାହାରେ ଆକାଶ
ପୃଥ୍ୱୀ ପ୍ରତିଶୋଧର ମାଟି କବାଟ !

ମାପି ଦିଅ ପୁଣ୍ୟର ମୂଲ୍ୟ
ହୃଦୟ ଯେମିତି ଚିହ୍ନା ବଦନାମ
କଥା ପରି ତାକୁ ଯଦି ବଦଳାଇ ହେବ
ମୁଁ ବଦଳାଇ ଦେବି କର୍ମଫଳକୁ !

ଯେମିତି ମିନତିକୁ ଉଲ୍ଲାସରେ ବଦଳାଇ ଥିଲି
ଏବେ ବଦଳାଉଛି ରହସ୍ୟମୟ ବିଡଂବନାକୁ
କୃତଜ୍ଞତାର କବାଟ ଖୋଲା ଅଛି
ବିଶ୍ୱାସର ସହିତ ବେଂଚ୍‌ରେ ବସିଚି ନକଲି ପବନ

ଏଠି ତ ସବୁ ଅକିଂଚନ !
□□

## ସାକ୍ଷୀ

ପୁରୁଷମାନଙ୍କ ସହିତ ଏ ଶଗଡମାନ
କୁଆଡେ ଯାଉଛଂତି
ଶ୍ୟାମଳୀ ବିଶ୍ୱାସ ସହିତ ଏଇ ସବୁଜପତ୍ର ମାନ
କାହିଁକି ପହଂରୁଛଂତି ?

ଏଠି କ'ଣ ତମ ଅରୋଭିଲ୍ ଅଛି
ପଦ୍ମର ଚାରି ପାଖୁଡା
ତା' ଭିତରେ ଛୋଟଛୋଟ ଦଶଟି ବଖରା
ସେଠି ତମ ବିଶ୍ୱାସକୁ ସଂଭୋଗ କରୁଛି ଜ୍ୟୋତି ?

କୁଳୀନ ଅବିଶ୍ୱାସମାନେ ଗଲେ କୁଆଡେ
ଜୀବନର ପବିତ୍ରତା ଅବିଶ୍ୱାସକୁ ସ୍ପର୍ଶ କରିବାରେ ଥାଏ
ସ୍ପର୍ଶ ତମକୁ ସାଯୁଜ୍ୟତାର ଟଂକା ଦେଇଛି
କୋମଳ କୈବଲ୍ୟକୁ ନେଇ କୂଳକୁ ଯିବାକୁ ?

ଯାଅ ଲହରୀ, ଯାଅ ଆତ୍ମ ଶୁଦ୍ଧିର ଉତ୍ତରକୁ
ଜୀବନର ଚୁଲିରେ ତୁମର ଅତିମାନସର ହାଂଡି ବସିଛି
ଗୋମୁଖରୁ ବାହାରିଥିବା ଆଲିଗଂନ ନିଜର ହୋଇଛି
ସତୀତ୍ୱର ମଂତ୍ର ପ୍ରବାହ ସାକ୍ଷୀ ରହି ଗୀତା ଛୁଇଁଚି ।

ଆକାଶ ଓ ଅବକାଶ ସବୁ ଏକ, ପ୍ରେମବ୍ରହ୍ମ;
ଦିବ୍ୟଚେତନାର ନିଜ ଜ୍ଞାନ ।
□□

# ଅଂଶୁପା

ଏତେ ଚେଷ୍ଟା ସତ୍ତ୍ୱେ
ଅଭିବ୍ୟକ୍ତ  କରି ପାରିଲି ନାହିଁ
ନିଜ ଅଂଶୁପାକୁ

ଏତେ ଚେଷ୍ଟା ସତ୍ତ୍ୱେ
ତୋଳି ପାରିଲି ନାହିଁ ନିଜ ପଦ୍ମ
ନିଜ ଅଂଶୁପାରୁ

ଏତେ ଚେଷ୍ଟା ସତ୍ତ୍ୱେ
ସଂତରଣ କରି ଅତିକ୍ରମ କରିପାରିଲି ନାହିଁ
ବିଳଂବିନୀ ଶ୍ୟାମଳୀ ସମୟକୁ...।

ଅଂଶୁପା ତ ମୋ ଶିଶୁଦିନ ହସ
ଅଂଶୁପା ତ ମୋ କାଂଥ ଧରା ଚାଲି
ଅଂଶୁପା ମୋ ମାଇଁନର୍ ସ୍କୁଲ୍ ଡିବେଟ୍‌ର
ପୁରସ୍କାର ଖଣ୍ଡେ ଖାତା ଓ ପେନ୍‌ସିଲ୍।

ଅଂଶୁପା ମୋ ଯୌବନର ପ୍ରଥମ ପୁଲକ
ମେଘଦୂତର ପ୍ରଥମ କଦମ୍ବ
ରାମାୟଣର ଆଦି ଶ୍ଳୋକ ତମେ ମୋ
କେମିତି ତମକୁ ଭୁଲିବି ମୁଁ ନୀଳ କାଦମ୍ବିନୀ ?

ତମେ ଯେ ସେହି ରକ୍ଷୁଣୀ
ଯିଏ ଲେଖିଚ: ଛୈଳେଂଦ୍ର ଆଗଛ।
ଆସିଛି ମୁଁ, ଆସିଛି ନିଜ ନଅରକୁ
ନିଜ ଅଂଶୁପାକୁ, ନିଜ ହୃଦୟର ହଦ୍ରକୁ

କିଂନ୍ତୁ–ତମେ କ'ଣ ସେହି ଋତୁ
ଋତନାଂ କୁସୁମାକରଃ, ମନ୍ତ୍ରଣାଂ ଓଁକାରଃ
ଏ ଋତ୍ତାଟା କ'ଣ ବାଙ୍କିରୁ ପାଣିକୋରଡ଼
କେଉଁଠି ରହିଗଲା ବ୍ରହ୍ମପୂରା ପୂର୍ଣ୍ଣ ଗର୍ଭା ଜୀବନ ?

ଓଁ'ରୁ ଓଁ'କୁ ବିଯୁକ୍ତ କଲେ
ପୁନର୍ନବା ଓଁ'ର ନିଜ ଅବସ୍ଥାନ
ନିଜ ଅଂଶୁପାର ଅଲିଭା ଅକ୍ଷର,
ଅଭୁଲା ଜୀବନକୁ ଭୁଲିଗଲା ଏମିତି

କଟାହାତ ଓ କଟା ମୁଂଡ ଆଚ୍ଛାଦିତ
ମହାକାଳୀର ଘଟସ୍ତନ
ଅଂଶୁପା,
ଏମିତି ଲିଭେ କ'ଣ
ଅନ୍ତର୍ଚେତନାରୁ ନିଃଶବ୍ଦ ଗାୟନ ? ?
□□

# ରୋଜ୍ ଗାର୍ଡେନ୍‌ର ପ୍ରୋଜ୍

Twit Twit Twit
Jug Jug Jug Jug Jug Jug.

-T.S. Eliot

କ'ଣ ନାଚୁଚି ? ଭାବ ବିଳାସ ! ମାୟା ?
ଲୀଳାର ପାଦ ଯୋଡିକ ?
ଦୁରୁହ ଶବ୍ଦ କେତେ ମୌଳିକ
ତତ୍ତ୍ୱ ଓ ଧ୍ୱନି ସମାନାର୍ଥକ, ପ୍ରାଣବନ୍ତ !

ବୀଫଂଚିର ତଂତ୍ରୀରେ ଓଜାଡି ଦେଲି
ସବୁ ଐଶ୍ୱର୍ଯ୍ୟ
ଟଂ ଟଂ ଟଂ, ଟଂ ଟଂ ଟା
ପୋଏଟ୍ରୀ ଇଜ୍ ମ୍ୟୁଜିକ୍ ଅଫ୍ ଥଟ୍

ଲଭ୍ ଇଜ୍ ମ୍ୟୁଜିକ୍ ଅଫ୍ ହାର୍ଟ
ସା-ସା ରି ଗା-ଗା ମା, ମା-ମା, ମା
ଗର୍କୀଙ୍କ ମା' ? ବୁଢା ଲେଂକା ପୁଲକିତ
ରାଜକେମା ଶିଖୁଛନ୍ତି ସୁବିଦିତ ସଂଗୀତ !

ଚିରଂତନ ଅକ୍ଷୟ ମାଧୁରୀରେ ଜୀବଂତ
ଜେମାଙ୍କ ବକ୍ଷୋଜର ଭାଷା ବିନ୍ୟାସ
ଆଖିର ଦୃଷ୍ଟି ଅର୍ଥବନ୍ତ ଓ ସୁନିର୍ବାଚିତ
ଧ୍ୱନି ଓ ଛଂଦର ରହସ୍ୟ ଜୈବ ପ୍ରକ୍ରିୟାରେ ଯୁଗନନ୍ଧ !

ଭା ଭା ଭା-ଭା, ଭା-ଭା, ....ଭା
ବ୍ୟଂଜନାର କଥା ସୁବିଦିତ, ଆ ଆ ଆ...ଆ-ଆ
କ୍ରୀଡା କରୁଛି ଅର୍ଥ ଶାବଲ୍ୟ ଓ ଧ୍ୱନି ମାଧୁର୍ଯ୍ୟ

ପ୍ରେମକୁ ଅନୁବାଦ କରୁଛି ଅପେକ୍ଷା
ଭଲ ପାଇବାକୁ ଭାଷାନ୍ତରିତ କରୁଛି ଧ୍ୱନି
ଚିରକାଳ ସମାଧାନହୀନ ସମସ୍ୟା
ମଝିରେ ବିଛାଇଛି ଶକୁନିର କୋଠିକଟା ପାଲି !

ଫଡ୍ ଫଡ୍-ଫଡ୍ ଫଡ୍ କପୋତୀର ଡେଣା
ମାଟିରୁ ଆକାଶର ଦୂରତା, ଜୀବନଠାରୁ ସ୍ୱପ୍ନର ଦୂରତା;
ଏଇ ତ ତାଜମହଲ ଇଏ ଅଳକା ସାନ୍ୟାଲ !
ରୋଜଗାର୍ଡେନ୍‌ର ଏଇ 'ପ୍ରୋଜ୍' ତକ ଚିହ୍ନା ମୋର !

ଉତ୍କଣ୍ଠାର ଯୁଗରେ ଇଏ ଏକ ହଜିଲା ତାରିଖ
ଯେଉଁ ଯୁଗ-ଯନ୍ତ୍ରଣାରେ କବିତା ଅସୁସ୍ଥ
କେମିତି କହିବି ତମେ ମୋ କବିତା, ଆସ ! ଧୀରେ ଆସ !
ପବନ, ଆଟ୍ ହିଜ୍ ଟେଂପୁଲ୍ସ କ୍ୟାରିସ୍ ଏ ଟେଲ୍ !

ପାଦ ପଡେ ସ୍ମୃତିର ପ୍ରତିଧ୍ୱନିରେ
ଆଉ ଖୋଲ ନାହିଁ ଗୋଲାପ ଗାର୍ଡେନ୍ ଦରଜା
ଯାଅ ଯାଅ ଯାଅ କହୁଛି ପକ୍ଷୀ ମଣିଷ ଯେମିତି
ତମେ ବୋହି ପାରିବନି ଅଧିକରୁ ଅଧିକ ରିଅଲିଟୀ !

ମୋ ଶବ୍ଦର ପ୍ରତିଧ୍ୱନି ନାହିଁ କେବଳ ପ୍ରକଟିତ
ଗୋଟିଏ ପ୍ରାର୍ଥନା, ଟୁ ୱାର୍ଡସ୍ ଦି ଡୋର୍
ଯାହାକୁ,ଉଇ ନେଉର ଓପେନ୍‌ଡ !!

ଖୋଲି ପାରିଲେନିନା' ?
□□

# ଚିତ୍ରକଳ୍ପ

ସମୟର ସମୁଦ୍ରରେ ଭାସମାନ ଫେଣର ଫୋଟକା
ଗୋଟିଏ ମୁଁ
ଜଡ ଓ ଶୂନ୍ୟର ସମିଶ୍ରିତ ରୂପର ଚିତ୍ରପଟ୍ଟ
ନିଜେ ନିଜର ଅଜ୍ଞାତ, ନାମ ସତ୍ୟବାନ !

ନଶ୍ୱର ଅଜ୍ଞତା ନିର୍ମିତ ଅବିନଶ୍ୱର ଅହଂର ଉଚ୍ଚତା
ଆଲୋକ ସଂଯୁକ୍ତ ଅବିଚ୍ଛେଦ୍ୟ ମନର ସେବାଲିପ୍ତ
ବିସ୍ମୟର ବିସ୍ମୟ ରହସ୍ୟର ରହସ୍ୟ ମୁଁ
କର୍ତ୍ତାର କର୍ତ୍ତା, ଯଦିଓ ବଂଦୀ ବସ୍ତୁସତ୍ତା ଓ ଦୁର୍ଭାଗା !

ଅଗମ୍ୟ ଭାବନାରେ ଯେମିତି ନିଜେ ସତ୍ୟର ନିର୍ମାତା
ଚିନ୍ମୟର ଗନ୍ତାଘର, ସମୟର ପିତା;
ବିପୁଳ ଓ ବିଶାଳ ମୋ ବଂଚିବା ଭାବୁଥିଲେ ବି
ଦେହର କ୍ୟାଲେଣ୍ଡରଟି ବାରଟି ଫର୍ଦ୍ଦ; ସୀମିତ ତା' !

ସବୁଠି ଲାଗିଛି ସୀମାର ତାର ବାଡ ସରିଛି ଶୈଶବ
କୈଶୋର ଫେରିଚି କେତେବେଳେ ଜାଣିଚି ଯୌବନ ?
ଯୌବନର ଉଦ୍ଦାମ ଜହ୍ନ କେତେବେଳେ ଗଲା ଅସ୍ତ
ବାର୍ଦ୍ଧକ୍ୟକୁ କି ଜଣାଇଛି ପ୍ରତୀକର ଜ୍ୟୋତିଷ ?

କଲା କୋମାରେ ଆନଂଦ ଅଚେତ
'ଦିସ୍ ୱାଜ୍ ଦି ଡେ ହୋଏନ୍ ସତ୍ୟବାନ ମଷ୍ଟ୍ଡାଇ' !
ଦେହ ଓ ଜୀବନ ପ୍ରକୃତିର ଉଜ୍ଜ୍ୱଳ ଅନୁଭବ
ଆନଂଦ ନୀରବତାର ହାତକୁ ତୋଳି ଦେବ !

ସତ୍ୟର କ୍ୟାବିନ୍ ଅଫ୍ ପ୍ରାଇଭେସୀ
ସୀମିତ ଜୀବନ ଅନୁପ୍ରବେଶୁଛି, ଶିଖା ଲିଭିଲା ଦିଶୁଚି

ସର୍ବୋଚ୍ଚ ଆରୋହଣ ଆରମ୍ଭ କରିଛି ଅଭୀପ୍ସା
ଅମାପ ବ୍ରହ୍ମାଣ୍ଡୀୟ ବିପୁଳତା ଅବତରୁଛି ।

ଗୋଟିଏ ଶ୍ୱେତ ଶବ୍ଦ ଶାଶ୍ୱତ ନୀରବତାକୁ ଭାଂଗୁଚି
ଗୋଟିଏ ଶବ୍ଦ ଅନିତ୍ୟ ଅସୁଖ ଲୋକର ସମୁଦ୍ର ଜଳକୁ
ବଦଳାଉଛି । ପବନ ଏବେ ଟାଣ ପ୍ରଶ୍ୱାସ ନେଉଛି,
ଗୋଟିଏ ଶବ୍ଦ ପ୍ରବଳ ଶକ୍ତ, ସୃଜନୀ ସ୍ୱରରେ କବାଟ ଖୋଲୁଛି ?

ପରିଧିହୀନ ଅସୀମ, ଖର୍ଚ୍ଚ କରୁଚି ଶକ୍ତି,
ଦେହର ନାମ ସମୟ, ବହିର ନାମ 'ଶୂନ୍ୟ'; ଲେଖୁଚି
ସେଇ ଶ୍ୱେତଶବ୍ଦ:ରୋଜ୍ ଅଫ୍ ଲଭ୍ !
ଅତ୍ୟୁଲ୍ଲାସ ଅମୃତରମୁଖ, କୃପା ଚକ୍ଷୁରେ ଦେଖୁଚି ।

ଛାତିରେ ଛାତି, ଜୀବନ ଅମୃତକୁ ଭେଟୁଚି
ପ୍ରାଚୀର ବିହୀନ ମନ ଅସୀମରେ ବିଲୁପ୍ତ, ପ୍ରାଣ ପ୍ରଶାଂତ,
ନୂଆ ଜନ୍ମର ସ୍ମିତ ଡେଣା ଟେକି ଭୂମି ଛାଡୁଛି
କେବଳ ଗୋଟିଏ ଛଂଦ, ଅସୀମର ନଦୀଟି ନାଚୁଛି ।

କେବଳ ଗୋଟିଏ ଚିତ୍ରକଳ୍ପ
ଚିରନ୍ତନ ପୂର୍ଣ୍ଣତାକୁ ପ୍ରସବ କରୁଚି
ସତ୍ୟର ଈଶ୍ୱର ମାନବଜୀବନକୁ ଦେଖି ଚକିତ
ଜନ୍ମଠୁ ମୃତ୍ୟୁ ପର୍ଯ୍ୟନ୍ତ !
□□

# ଅଛି, ସରି ନାହିଁ

ଏବଂ
ବର୍ଣ୍ଣନା କରୁଚି ଗୋଟିଏ ବୃତ୍ତାଂଶ
ବିବାହ ମୁକୁଟପରି ଚକ୍‌ଚକ୍
ପାଇନାପ୍ଲପରି ସ୍ୱାଦିଷ୍ଟ ଗୋଟିଏ ବର୍ତ୍ତମାନର ଅତୀତ ।

ଉଜ୍ଜ୍ୱଳ ଫେଣମାନଙ୍କ ଫ୍ଲଡ୍ ପ୍ରସାରିତ
ବିସ୍ମରଣର ସମୀପବର୍ତ୍ତୀ ଅଂଚଳ
ଅନୂଢ଼ !
ସଂଗୀତର ଗଂଭୀର ସ୍ୱର, ବୋଧେ କାହା ନାମର !

ଗ୍ଲାସ୍‌ରେ ନିଶା ଭର୍ତ୍ତି
ସ୍ୱର୍ଗରେ ବି ପାଇନାପ୍ଲ ବାସୁଚି
ଯୁବତୀଟି ଲଂଗମାର୍ଚ୍ଚର ନାତୁଣୀ
ଦୌଡୁଥିବା ସମୟର ମୃଗୁଣୀ

ମୁକ୍ତାବୁଂଦା ଆଉ ଗୋଟାଅ ନାହିଁ ପାପୁଲି
ମନା କରିଚି ଇଂଦ୍ରାଣୀ
ସଂଗୀତର ସ୍ୱପ୍ନ ସଂଜୀବୀତ ଶବ୍ଦ ବ୍ୟତୀତ
ଏବେ ମଧ୍ୟ ! ଦିଅ ମତେ ଗୋଟିଏ ମିନିଟର ଟିୟୁନ୍ !

କହିବି ମୁଁ
ଅଙ୍କୁରିତ ସେହି ସ୍ରୋତର ବୋହିବା ଉଜାଣି
ମୋ ପାଖରେ ଥରଥର ହୋଇ ସ୍ପଂଦିତ
ପ୍ରଶ୍ୱାସର ନ ଯଯୌ ନ ତସ୍ଥୌ ଚାପର ଉତ୍କଣ୍ଠା
ହେ, ଆଃ-ଲାଇଟ ଚାଲିଗଲା !

ଲଣ୍ଠନ ଲଗାଅ, ମୁନା
ପୁରୁଣା ପୃଥିବୀଟା ଠିଆ ହୋଇ ଶେଷଥର ଲାଗି କ'ଣ
ମାଗୁଛି ମୋ ଦେହର ଠିକଣା ?

ମୋ କହିବା ନ ସରିବା ପୂର୍ବରୁ
ଚଟାଣରୁ କେମିତି ଉଠାଇ ନେବ ମସିଣା ?
□□

# ଚିନ୍ତାମଗ୍ନ

ପିଆଜ ନାଲି ସୂର୍ଯ୍ୟ ତମ ଝର୍କା କାଚ ତଳେ
ଓଠ ଚିରି କହୁଚି, ମୁଁ ପ୍ରେମରେ ପଡ଼ିଚି
ବୁଢ଼ୀ ପୃଥିବୀର !

ପବନ ବି ଚୋକୀଟାଏ କବିତାକୁ ଜାଣିଚି,
ଜାଣିଚି ଧଳାଶାର୍ଟ ପିନ୍ଧିଥିବା ଆକାଶକୁ
ଧଳା ଫେଣର ବନ୍ୟାରେ ସେ ଭାସୁଚି !

କଂଚା ବରପତ୍ରରେ କାକର ପଡ଼ିଛି
ତମ ମନ ପରି ଓଦା ପତ୍ର,
ଭିଜା ଫଗୁଣର ପତ୍ର କିଏ ଦେଇଛି ?

ଜୀବନର ଆଂଗୁଠିରେ ଫୁଲମାଳଟିଏ
ଦୁଃଖ ଦୁଃଖ ବାସୁଚି
'ଟ୍ରୁ ଲଭ୍' କବିତା ଜାଣିଚି ଏବଂ ତମେ ବି !

ବିଭିନ୍ନ ବର୍ଣ୍ଣରେ କ୍ଷଣସ୍ଥାୟୀ ଆନଂଦକୁ
ଘା'ଭର୍ତ୍ତି ହୃଦୟ ଖୋଜିବ କେମିତି
ହୃଦୟର କ'ଣ ଥାଏ ଆଖି ?

ଆଖି ପଦ୍ମ ମଧୁରେ ଅଙ୍କା ଯାଇଛି
ଭ୍ରମରର ଆକୃତି
ମୋ ଆଖି ପଂଝୁରୀ ଭିତରେ ପକ୍ଷୀଟିଏ ବସିଛି !

ସିଏ ମୋ ପ୍ରାଣପକ୍ଷୀକି ?
ହେ ନା ! ସିଏ ଡେଣା ଲଗା ଦୁଃଖ
ଉଦ୍‌ବୁଦ୍ ରୋଗ ପୀଡିତ କିଛିକିଛି କାଂଦ !

ଇଟ ଇଜ୍ ଟାଇମ୍ ଟୁ ଗୋ
ଯେମିତି ଜଳ ମିଶ୍ରିତ ମଦ୍ୟ, ଜିଙ୍କ୍ ସିଲ୍‌ଭର;
ସେମାନେ ଲଙ୍ଗଳା ପାଦ, କିଂତୁ
ବନସ୍ତଟା ଖୁବ୍ ଲଂବ !
□□

## ସିକତାର ସଂତାପ

ଭାବନାର ଗପରେ ମୁଁ ହଜି ଯାଇଛି
ମଧ୍ୟରାତ୍ରୀର ଏକ ଉଜ୍ଜ୍ୱଳ ନକ୍ଷତ୍ର
ଚିରନ୍ତନ ପୁସ୍ତକର ଫର୍ଦ୍ଦେ ଚିହ୍ନା ବର୍ଣ୍ଣମାଳା
ଆଚ୍ଛାଦିତ ହୋଇଯାଇଛି ଅଂଧାରର ପଟେ ପାପୁଲିରେ
ଈଶ୍ୱରଙ୍କ ଗୋଟେ ନା'

ଶାସନ କରୁଛି ଆଇନ ?
ଯେଉଁଠି ଶପଥ କରୁଛି ସୂର୍ଯ୍ୟର ଔଜଲ୍ୟ
ସତ୍ୟର ବିଶେଷତ୍ୱ କରିଚି ଦସ୍ତଖତ
କେଉଁଠି କେଉଁଠି ସେ ହେମନ୍ତ ଋତୁର ଅଂଶ ?

ସୃଷ୍ଟିର ଜନ୍ମ ତୁମେ ଦେଖିପାରିବନି
କେତେ ବିଶାଳ ସେ ସ୍ରଷ୍ଟା, ଆମ ଭାଗ୍ୟ ବିଧାତା
ମୁହଁରେ ତାଙ୍କର ଦିନର ଉଜ୍ଜ୍ୱଳ ଓଢଣୀ
ସିଏ ମନା କଲେ
ରାତ୍ରୀର କଳାଛାଇକୁ ଶକ୍ତ ସୌର ରଶ୍ମି
ଆଲିଙ୍ଗନ କରି ପାରିବନି !

ଅଗଣିତ ତାରକା ଅନେଇଛନ୍ତି
ସଂସାରରେ ଲଜ୍ଜା ବୋଲି କିଛି ରହିଛି
ବରଂ ମେଘ କନ୍ୟାର ସ୍ତନ ଚୁମ୍ବୁ ଥାଉ ପାହାଡର ଛାତି
ରାତ୍ରୀର ମୃତ୍ୟୁ ପରେ ଉଷା ଲେଖିବ ଆଲୋକର ଚିଠି !

ଉଜ୍ଜ୍ୱଳ ହେଉ ଈଶ୍ୱରଙ୍କ ନାମ
ବିଶେଷ କାରଣ ? ଘୋଷଣା କରିଛି ଦିନ

ଗତକାଲିର ରାତ୍ରୀପରି ସବୁ ଦାଗହୀନ
ସ୍ୱର୍ଗ ଏକ ରୂପାର ଚଦର, ଚିରକାଳ ପ୍ରେମରେ ଆଚ୍ଛନ୍ନ !
ସଂସାର ଏକ ଭୁଲ ସ୍ଥାନ
ଯେଉଁଠି ଏ ଗ୍ରେନ୍ ଅଫ୍ ସ୍ୟାଣ୍ଡ୍
ଲହରୀମାଳାଙ୍କୁ
ଦେଇଥାଏ ମନ !
ପପ

## ଜୀବନ

ମୋ ଶବ୍ଦ
ବନାନ କରୁଚି : ଦୁଃଖ ଓ ଜଂଜାଳ
ଯେତେସବୁ
ଅସୁବିଧାର ଭଂଗା ଭଂଗା ଅଂଶ
ମତେ ଅତିକ୍ରମ କରୁଛି ଧାଡିଏ ପାହାଚ।

ସବୁବେଳେ ହଁ'ଟିଏ ଜଳିଜଳି ମରୁଛି
ଯେମିତି ଗୋଟେ ପୋଡା ମକା,
ପ୍ରତ୍ୟେକ ପଥର ଉପରେ ଘାସ ବୁଣିଚି ଗାଲିଚା
ମୁକ୍ତାରେ ଲେଖିଚି କିଏ : ଗଡ୍ ଅଲ୍‌ମାଇଟୀ ?

ପ୍ରବାହ ଅସମାପ୍ତ
ଜହ୍ନ ପରି ହୃଦୟଭଂଗା, ମେଘଟା ଅଭାଗା
ପଥର ସଂଧିରେ ବିଲୀନ ହେଲାବେଳେ
ଦେଖେ ସ୍ୱପ୍ନ: କାକର ବୁନ୍ଦା।

ଜୀବନ-ଜୀବନ।।
କ'ଣ ଈଶ୍ୱରଙ୍କ ନାଁ
ଶୋଷଣ ଦ୍ୱାରା ଧୂଳି ନିଷ୍କାସନ
ମୁହୂର୍ତ୍ତମାନଙ୍କୁ ନିଷ୍କାସିତ କରୁଛି ନାସିକା
ବଡ ଉଦାରତା।।

କଳମର ନ ଥାଏ ଉଚ୍ଚତା
ନୀରବତାକୁ କେମିତି ବଖରାଟିଏ ଦେବି

ବଡ ଅସମ୍ଭବ କଥା !
ପବନ, ବୁଜି ଦିଅ ଝରକାର ପତା

ଆବଶ୍ୟକତାର ଠିକଣା ଲେଖୁଚି ଜୀବନ
ଜଣେ ଦୃଷ୍ଟିହୀନ
ବୃଦ୍ଧଡାକ୍ତର
ଅଂକା ବଂକା ଟଂକା ପ୍ରେସକ୍ରିପ୍ସନ :
□□

# ତୁମ ମୁହଁର ତାରିଖ

ମୁକ୍ତ ଭାବେ ବୋହି ଯାଉଛି ମୁହୂର୍ତ୍ତ
ଯେମିତି ଏକ ଧଳା ପକ୍ଷୀ
ମେଘମାଳା ଭିତରେ ପହଁରୁଚି
ତୂଣୀରସ୍ଥ ଶୀଘ୍ରତା ଗୁଣାରୋହଣ ପାଇଁ
ସ୍ୱପ୍ନ ଦେଖୁଚି ।

କୂଳକୁ ଆଚ୍ଛାଦିତ କରିଛି ମାନସିକ ବିଭ୍ରାଂତି
ତମେ ନାହଁ ।
ଦୂଷିତ ଅଂଧକାର । କବିତା ଜନ୍ମ ହେଲା ।
ଗୋଟିଏ ମନୋଭାବ ଶବ୍‌ଦରେ ଭାଂଗିଗଲା ।

କିଏ ଡାକୁଚ ? ଆସ, ଛଂଦରେ ଭେଟ ହେବା
ବେଲଗଛ ତଳେ;
ଏବେ ବି ବ୍ଲାକ୍‌ବୋର୍ଡ଼ରୁ ଲିଭି ନାହିଁ
ତୁମ ମୁହଁର ତାରିଖ । ଖର୍ଚ୍ଚ ସରିଚି ମୁହୂର୍ତ୍ତ ।

ମୃତ ସୌନ୍ଦର୍ଯ୍ୟ ଅନୁମୋଦିତ
ମତେ ଦିଅ ମୋ ଅଶ୍ୱ, ଦୌଡରେ ଜିତିବ
ଯେମିତି ଜୀବନକୁ ଜିତି ଯାଇଛି ଜ୍ୟୋତି
ପ୍ରେମକୁ ଜିତି ଯାଇଛି ହଳେ ରୂପା ପାଉଁଜି ।

ତୁମ କଠୋରତାଠୁ ଅଧିକ ଟାଣ କ'ଣ ଦର୍ପଣ
କଫିନ୍‌ର ଘୋଡଣି ପାଖରେ

ମୁଁ ବହୁତ ବହୁତ କୃତଜ୍ଞ
ଖୋଲା ଝର୍କାର ମୁହଁ ପରି ଘା'ଟା ଜୀବଂତ ।

ପ୍ରେମିକର ହୃଦୟ ଟିକ୍‌ଟିକ୍ ପିତଳ
ତା'ଭିତରେ ନ ଥାଏ ସ୍ପଂଦନ
ମୂର୍ତ୍ତି, ମୂର୍ତ୍ତିଟିଏ କେବଳ, ନଥାଏ ତା' ପ୍ରାଣ
ତୁମରି ମୁଁ ।। କେବଳ ତୁମରି... ।
□□

# ତିକ୍ତ

||୧||

ତମ ଆଖି ଭିତରେ ସେ ଗୀତ ଦୁଇଟା
ଏତେ ମିଠା
ତାକୁ କେବଳ ନ ଗାଇ ପାରେ ମୃତ୍ୟୁ
ମୃତ୍ୟୁ ତମ କେଶର ନୀଳ ଜ୍ୟୋତ୍ସ୍ନା !

ମଂବର ଆସ୍ତରଣ ଉପରେ ମଂଦାରମାନ ପହଂଗୁଛଂତି
ପୃଥିବୀର ସବୁଜିମାରେ ତମେ ସଫେଦ୍ ମଲ୍ଲୀପୁଷ୍ପ
ଆଉ ହସ ନାଇଁ ଗଡ୍ ଅଫ୍ ସ୍ୱୀଡ୍
ଏବେ ହୃଦୟ ମୋ ଶ୍ମଶାନର ଡ୍ରମ୍;

ତାକୁ ବାଦନ କରୁଛି ଆଡ୍‌ଭର୍ସ ଫୋର୍ସ
ଗୋଟିଏ ଧାରୁଆ ମଧ୍ୟାହ୍ନ !

||୨||

ନିଷ୍ଠୁର ମଇ, କୋଳାହଳରେ ମୁଖରିତ
ଅଦୌ ଶୋଇପାରୁ ନାଇଁ, ରାଇଜିଂ ଫ୍ରମ୍ ବେଡ୍
ତମ ସ୍ତନ ଦୁଇଟା ଗୋଲାପ ଦି'ମୁଠା
ଅଚିହ୍ନା ବାସ୍ନା ! ଗୁରୁତ୍ୱକୁ କରିଛି ପ୍ରତ୍ୟାଖ୍ୟାତ ?

ନରକରେ ସକାଳ ଏବେ ଭିକ୍ଷା କରୁଚି
ହୋଲ୍ କୋର୍ସ ଚାର୍ମ୍ସରେ ମାନିଫୋଲ୍‌ଡ
ସତେରେ ତମେ କ'ଣ ଏତେ ଭଲ
କେମିତି କହିବି ଏତେ ବାଜେ; ୟାମ୍ ଆଇ ମୋକିଂ ?

ବ୍ଲିଶ୍ ଏଣ୍ଡ୍ ପେନ୍ ବି ଡ୍ରଂକ୍
ପାସ୍‌ସିଅନ୍‌ର ଫ୍ୟାସନ୍ କେମିତି ହେବ ତିକ୍ତ ?

।।୩।।

ନୀଳ ଶିଖାରେ ଛପିଗଲା ଛାଇ
ନ ଶୁଣା ଯାଉଥିବା ଦୂରଂତ ଗୋଟିଏ ଡାକ
କେମିତି ପାଖକୁ ଘୁଂଚିଘୁଂଚି ଆସିବ ?
ଯେଣୁ-
ବଗିଚାଟିରେ ପଡି ଯାଇଥିଲେ ମହୁମାଛି,

ହୃଦୟର କବାଟକୁ ବୁଜି ଦେବି ?
□□

# ବର୍ଷା

।୧।

ଶକ୍ତିରେ ସଂଯୁକ୍ତ ପକ୍ଷୀର ଗୀତ ପୁନର୍ଧ୍ୱନିତ
ସକାଳ ମୁହଁରେ ନାହିଁ ଲାଲ ଓଢଣୀ
ଅତୀତ ଏକ ବୟସ୍କ ଚର୍ଚ୍ଚ, ଅଗଣାରେ ଗୋଲାପଗଛ
ପବନ ଘନକୃଷ୍ଣ ଡୋଳାଯୁକ୍ତ ଯୁବତୀ, ହସୁଚି ।

ଫୁଲମାନେ ଖୁବ୍‌ଶୀଘ୍ର ସଂଚାର କରିବେ ସୁଗଂଧ
ଯେମିତି ଜଳୁଛି ବସନ୍ତର ଆଧ୍ୟାତ୍ମିକ ଚର୍ଚ୍ଚ
ସ୍ୱପ୍ନର ଦାଗ ସ୍ମୃତିର ଲୁଗାରେ ଲାଗିଚି
ଅଲଗା ହୋଇଯାଇଥିବା ଅତୀତରୁ ତୁମକୁ ଖୋଜୁଚି ।

।।୨।।

ତୁମ ଜୀବନ ତ ଜୀବନ ନୁହେଁ, ଗୋଟିଏ ମନୀବକ୍ସ
ପୂର୍ବସ୍ମୃତିର ଖୁଚୁରାମାନ ତୁମ ପାଇଁ ଅନାବଶ୍ୟକ
କଏନ୍ ହେବ କ'ଣ, ଯଥେଷ୍ଟ ବଂଚିବାର ଏଟିଏମ୍ କାର୍ଡ
ସବୁବେଳେ ତମ ପୃଥିବୀରେ ଗୋଟିଏ  ଋତୁ; ସ୍ୱାର୍ଥ ।

ଭାଗ୍ୟ ଉପରେ କେମିତି ରାଗ କରିବି
ନଦୀଜଳ ଉଷୁମ୍ ହୁଏନି, ସୂର୍ଯ୍ୟକିରଣ ହୁଏ ବର୍ଚ୍ଛା
ଜ୍ୱଳଂତା ସମୟ, ଆସିଲା କେଉଁଠି ବର୍ଷା ?
ଯେଉଁଠି ଅଲଗା ଏକ ଜୀବନ ପ୍ରକ୍ରିୟା
ଠିଆ ହୋଇଥିଲା ବୁଢା ସାଁ'ତଙ୍କ ଲେଖା ।

◻◻

# ତୀରବିଦ୍ଧ ତାରିଖ

ଗହମ ସଫେଦ୍ ହାତ ନିରାପଦ ଅପହଂଚରେ
ତମେ ସାଇତି ରଖ, କଇଁ କୋମଳ ପୁଷ୍ପ !
ଋଣ ପାଇଁ ବନ୍ଧକ ସଂପତ୍ତି ବିଷୟରେ ଏବେ
ମେଘମାନେ ନୀରବ

ସଂଧ୍ୟାର ଅସ୍ତରାଗ ସସୀମ ଭୟରେ ଆରକ୍ତ
କ୍ଷୁଧାର ଗୋଲାପ ପ୍ରସ୍ଫୁଟିତ ଯେମିତି ପ୍ରତୀକ୍ଷିତ ଦୁଃଖ
ଘାସ ଉପରେ ଚମକୁଚି ମୁକ୍ତା, ରାତ୍ରୀର ବିଛା ରୁମାଲରେ;
ଗୋଟିଏ ଗୁଡି କିଏ ଉଡାଇଲା, ଏଇ ଅବେଳ ବେଳରେ ?

ଏଇଟା ତ ଜହ୍ନ ନୁହେଁ, ତମ ମୁହଁର ନୌକା
ଭାସୁଚି ଆକାଶର ନୀଳ ସମୁଦ୍ରରେ
ତା' ଭିତରେ ଅଚିହ୍ନା ସ୍ୱପ୍ନ କିଛି ଆସୁଛନ୍ତି ମୋ କୂଳକୁ
ସପୁରୀର ବାସ୍ନାରେ ବିଭୋର ଫେଣମାନେ ନୃତ୍ୟରତ
ଓ ଉତ୍ତାଳ ଆନନ୍ଦରେ ଥାକଥାକ !

ଗୋଟିଏ ତରୁଣ ଗରଜର ଯେମିତି ଆଜି ଜନ୍ମଦିନ
ଆଜି କ'ଣ ମାର୍ଚ୍ଚ ୧୯, ନା' ମଇ ୨୧
ସ୍କୁଲ ଛୁଆମାନେ ଯେମିତି ଧାଡି ବାଂଧି ଚାଲିଛଂତି
ଦୁରଂତ ଗୋଟିଏ ଭବିଷ୍ୟତ ଆଡ଼ିକି !
□□

# ତୃଷ୍ଣା ନଜୀର୍ଣ୍ଣା ବୟମେବଜୀର୍ଣ୍ଣାଃ

ଫ୍ରୀଡମ୍ ଅଫ୍ ଲଭ୍
ନୂଆ ମୁହଁ ଫିଟା ଛତାପରି ଗୋଲ
ଆବେଗଦୀପ୍ତ
ଚିରୁଡାଏ ସାଦା କାଗଜପରି ହସ,

ଶନିର ବଳୟରେ ବରଂ ଥାଉ ଆକାଶ ।

ତୃଷିତ ହୃଦୟ ମୋ ନିଃସଂଗ
ଦେଖଦେଖ କେତେ ନିଷିଦ୍ଧ ଆଜ୍ୟୁଜାଲ୍
'ସି' ଇଜ୍ ଅଫ୍‌ଫ'
ମତେ ହଜମ କରି ଦେଇଛି ପାଣିପାଗ
ଏକ ଭୁଲ ସମୟର ପୂର୍ବମେଘ ।
❐❐

# ଜୀବନ ପିଠିରେ ଚୋଟ

ହୃଦୟ ଭାଙ୍ଗିଗଲେ ଏକ ପ୍ରକାର ଆନଂଦ ମିଳେ
ତେନ୍ତୁଳି ଗଛଟିଏ ଠିଆ ଠିଆ ବଢେ
ପରିଚିତ ବ୍ୟତୀତଟିଏ ଡାଳପରି ଛିଡେ
ପ୍ରାର୍ଥନାଠି କାମ ନ ଥାଏ ପ୍ରକୋଷ୍ଠର ।

ହାରି ଯାଇଥିବା ମଣିଷଠି
ଥାଏ କି କିଛି କାମ ହଜା ସମୟର ?
ମୋର କିଂବା ତୁମର
କିଂବା ପରୀ ଭୂଲତା ଦୁଇଟିର ?

ଚିହ୍ନି ହେଲାନି ମେଘକୁ କି ମାଘକୁ
ମାପି ହେଲାନି ଭୁଲକୁ କି ଭଲକୁ
ଲେଖା ଚିଠି ଚିରି ଦେଲା ପରେ
ଆଉ ରହିଲା କ'ଣ ଯୋର ପଣକୁ !
□□

## ଦୀକ୍ଷାନ୍ତ

ଏବେ ଖଂଡ ଖଂଡ ହୋଇ ଯାଇଛି ମରଣଶୀଳ ମାଂସ
ପ୍ରାଣ: ଅଗ୍ନି ସମୁଦ୍ରର ପରମ ଆନଂଦ
ବିପୁଳ ଦହନ ଭିତରେ ବୁଡି ସାରିଛି ମନର ନାବ
ଈଶ୍ୱରଙ୍କୁ ସମର୍ଥନ କରୁଛି ଓ ବହନ କରିଛି ତରଂଗ

ଅମୃତ ଶକ୍ତିରେ ବଦଳିଛି ତମ ଆଖି ଓ ସମୟ
ବୃହତ୍'ର ବୁଂଦାଟିଏ ଅଜଣା ଅଭୀପ୍ସାର ସୁଖ
ଧାରଣ କରିଛି ପ୍ରେମର ଛଦ୍ମବେଶ
ଔଜଲ୍ୟରେ ମିଶ୍ରିତ ଅତୀତ ଖେଳୁଚି କଂଦୁକ

ଦୃଶ୍ୟରୁ ଶବ୍ଦ, ଚିତ୍ରରୁ ସୌନ୍ଦର୍ଯ୍ୟରେଖାର ପ୍ରଥା
ଅଭିଳାସ ତା' ! 'ନିୟୁମେକ୍', ଏ ସ୍କେଲ୍ ଅଫ୍ ସେନ୍ସ !
କ'ଣ ପୁନର୍ଗଠନ କରୁଛି ସତ୍ତା,
ସୌନ୍ଦର୍ଯ୍ୟର ସମୃଦ୍ଧିରେ ପହଂଚିବା ପାଇଁ ରାସ୍ତା ?

ସାଁ'ତଙ୍କ ମହାନ୍ ଗୋଟେ ନୂଆ ବ୍ୟାକରଣ ଖାତା ! !
□□

# ଫାଶ

ତମ ପାଖରେ ସର୍ତ୍ତର ଲୁହାକଂଟାଟିଏ ନାହିଁ
ନାହିଁ ସଠିକ୍ ନିଷ୍ପତିର ହାତୁଡି
ଠିକ୍ ଅଛି
ଏବେ କାଂଥକୁ ତା'ର ପ୍ରାପ୍ୟ ଦେଇ ହେବନି

ଯଥେଷ୍ଟ ହେଲାଣି
ଯିବା ପୂର୍ବରୁ ଥରେ ଦେଖା ହେଲାନି
ସମୟ ଲଂଫ ଦେଉଛି
ଆଂବଗଛ ତଳେ ବିଛା ଛାଇ ଉପରକୁ

ଖରାଟା ରକ୍ତବୋଳା ଚକ୍‌ଚକ୍ ଖଂଡା
ମହମବତିର ହୃଦୟକୁ ଚିରିଛି
ଆଂଚଂବିତ ଆଉ ଅଭିମାନ କରୁ ନାହିଁ
ଆଖି ଅନେକ ଅନେକ କଥା କହୁଛି

ସବୁଛାଡି ଦେଇ ଚାଲିଗଲା ବିହ୍ୱଳିତ ବାକ୍ୟ
ତାକୁ ଜୀବନ ଭଲ ଲାଗୁଥିଲା
ଭଲ ଲାଗୁଥିଲା ଓଠକୁ ନୂଆ ଚାମୁଚରେ କ୍ଷୀରୀ
ସାଂଗରେ ଖୋଲାଖୋଲା ଭାବ ଓ ସୁଖମୟ ଶିହରଣ

ଧୈର୍ଯ୍ୟର ପ୍ରକୋଷ୍ଟଟି ନିର୍ଜନ
ନିଷ୍ପାର ଖର୍ଚ୍ଚ ନାହିଁ, କେବଳ ସଂଚୟ ଓ ସଂଚୟ
ଘର ଚାରିକାଂଥ ଭିତରେ ପୁଣିଥାଏ ଏତେ ରାସ୍ତା
ଯେତେ ଯୁଆଡେ ଚାଲିଲେ ବି ଚାରିଆଡ ବଗିଚା ! !
□□

# ଖୋଲା ଝର୍କା

ମତେ ଫେରାଇ ଦେଲେ ପ୍ରତିଫଳନ
ପୃଷ୍ଠପଟ୍ଟ ଓ ଆସିବା ପାହାଚ, ଡିଆରି ସବୁ ମିରାକ୍ଲେ
ଶିଳ୍ପୀର ବ୍ୟବହୃତ ବ୍ୟକ୍ତିଗତ ଅଂତର୍ବସ୍ତ୍ର
ଦୟା, ଦୁଃଖ, ଭାବନା ଓ ଅନିଦ୍ରାର ଅସମାପ୍ତ ଚିତ୍ର !

କଂସା ଆକୃତିର ଅନାଚ୍ଛାଦିତ ଶୂନ୍ୟତା;
ମଣିଷର ଉପସ୍ଥିତି ପ୍ରତି ଭୟ କୁଆର ଆଣିଛି;
ଫ୍ରେମ୍ ଭିତରେ ମଝି ଆକାଶ ବ୍ଲୁ ବେଲୁନ୍‌ଟିଏ,
ତମ ମୁହଁପରି ଦିଶୁଛି ! କିଂତୁ-

ତୁମେ ତ ଏକ ବ୍ଲୁ ଫ୍ଲାୱାର୍, ଭାରି ଫର୍ମାଲ୍ !
ଦୁଃଖକୁ ପ୍ରଭାବିତ କରିଛ
ଲଫାପାଟିଏ ପରି ଭିଯୁଜୁଆଲ୍ କବିତାଟିଏ ନେଇ
ତୁମେ ଆସିବ ! ଏକାନ୍ତରେ ଏବେ ବି ମୁଁ ଅଛି, ଆସ !

ମୁଁ ତୁମର ପ୍ରତୀକ୍ଷିତ ଏକ ଖୋଲାଝର୍କା
ବଡ ତୀକ୍ଷ୍ଣ ମୋ ଆଗ୍ରହ ଓ ପୂର୍ଣ୍ଣ ଉଦ୍ଦେଶ୍ୟ
ସମୟକୁ କରୁଛି ପ୍ଲାଷ୍ଟର, ମୋ ପାଖରେ ଠିଆ ଘାସମାନ
ପତ୍ରପରି ହସିଲେ ମୁଁ କ'ଣ ଛାଡି ଦେବି ଇଂପ୍ରେସନ୍ ?

ମୁଁ କ'ଣ ଛାଡି ଦେବି ଇମିଟେସନ୍ ?
ତା'ହେଲେ ତୁମେ କ'ଣ ଫ୍ରେଜ୍‌ଟିଏ ପରି
ସ୍ପେସର ଧାଡିରେ ବସିବ ? କହିବ, ଟିକିଏ ପରେ;
ମୃତ୍ୟୁଟା ବୁଢା ନୁହେଁ, ମୋ ପରି ଯୁବତୀ ଜଣେ !

ଏ, ସତେରେ
ମୃତ୍ୟୁ କ'ଣ
ପ୍ରେମ ଦେଇ ଜାଣେ ?
□□

# ସଂଯୁକ୍ତ ପଦ୍ମ ପାପୁଲି

ସମୟ ଓ ଶୂନ୍ୟତା ମତେ ଶିଖାଇ ଦେଲେ
ବଂଚିବାର ସ୍ୱାଧୀନତା ଓ ସଚେତନତା !
ଅଭଙ୍ଗ ଇତିହାସର ମୁଁ ନେଲି ଯତ୍ନ
ଦୃଶ୍ୟ ହେଲା ସ୍ତରର ଧାରାବାହିକତା ଓ ଗଭୀରତା !

'ସମୟ'-କ'ଣ ଏଇ ଶବ୍ଦ ?
'ଶୂନ୍ୟତା'ର ପରଦାରେ ଗଭୀର ସ୍ତର ଆଚ୍ଛାଦିତ
ଦୁଃଶାସନପରି ପର୍ଯ୍ୟାପ୍ତ ବସ୍ତ୍ର ଓଲାରିଲି
ମୃତ୍ୟୁର ମୁହଁ ପରି ସମୟର ମୁହଁଟି ଆବୃତ !

ଅନାବୃତ ହେଉ ନାହିଁ ଆବକ୍ଷ
ଏ କେଉଁ ଗୋଥିକ୍ ଆକୃତି
କଳା କୃତିଟିକୁ ସଂପାଦିତ କରିଛି
କିଏ ସେହି ସେଣ୍ଟଜନ୍ ଦି ଇଭାଙ୍ଗେଲିଷ୍ଟ !!
ଚିହ୍ନି ହେଲା ନାହିଁ ବୁଡି ଯାଉଥିବା ଜାହାଜଟିକୁ
ଆପାର୍ଟ, ନିୟୁଆର୍ଟ:ଇଂପ୍ରେସ୍‌ନିଜିମ୍
ମୁହୂର୍ତ୍ତମାନ ଶବ୍ଦର ତୂଳୀରେ କେତେ ରିଅଲ୍
ସେଣ୍ଟିମେଣ୍ଟରେ ପାଥୋସ୍, ସମୟର ବିଶେଷତ୍ୱ !

'ଶୂନ୍ୟତା' ଲାଇଫ୍‌ସାଇଜ୍ ଓ ସଲିଡ
ମୁଁ କିଂତୁ ଏକ ହାପ୍ ହିଡେନ୍ ହ୍ୟାଟ୍
ଏହାକୁ ମୁଣ୍ଡରେ ବସାଇଛି ଏକ ଭିୟୁଜୁଆଲ୍‌ଆର୍ଟ
ଯାହାର ଏସ୍‌ଥେଟିକ୍ ପରିଣାମ ଫ୍ରୀଡମ୍ !

ଚକଚକ୍ ହୃଦୟର ଆଖି ଯୋଡ଼ିକ
ବିସ୍ମୟରେ ନିବିଡ଼ ଓ ମର୍ମନ୍ତୁଦ
ଶ୍ୟାମକୁ ଜୁହାର ଓ ତା' ପ୍ରେମକୁ ଜୁହାର, ସବୁ ନମସ୍କାର
ମତେ ଏଇଠି ଥୋଇ ଦେଇଯିବାକୁ ହେବ।

ତମେ ସମୟଠୁ କଠୋର
ଓ ଶୂନ୍ୟତାଠୁ ସୁକୋମଳ ଧଳାଧଳା ଶିମିଳି ତୁଳା
ପ୍ରଣବର ନୀରବତାରେ ସିକ୍ତ ଦେହର ଅରଣି
ଆଗ୍ନେୟୀ ପ୍ରଥମା ମାତ୍ରା ବାରୁଣୀର ପ୍ରତିଷ୍ଠାତା

କର୍ମ ଧୀତତ୍ତ୍ୱ, ସୂର୍ଯ୍ୟ ଅନ୍ନ, ଭର୍ଗଶ୍ଚନ୍ଦ୍ରମା ବୈଭର୍ଗଃ
ବିଷୟ ପଥ, ଦୌଡ଼ୁଛି ଅଶ୍ୱ, ଚିନ୍ତୟନ୍ମାନମାମ୍ନନି
ଚିହ୍ନି ପାରିଲିନି
ଏତେ ଖରା, ଏତେ ବର୍ଷା, ଶୀତର ପାପୁଲିଗୁଡ଼ା ମୁଠା ମୁଠା।

କାନ୍ତିମୟ ଐଶ୍ୱର୍ଯ୍ୟମୟ ଗହନ ପ୍ରଶାନ୍ତି
ଜଣେ ଯୁବତୀର ସୁଷମା ନେଇ ଓହ୍ଲାଅ ଗୋ ରାତ୍ରୀ
ଏତଦ୍ ଅକ୍ଷର
ଦେହର ପ୍ରକୃତିଙ୍କୁ ଅନୁରୋଧୁଚି। ଓଁ ଶାନ୍ତି...ଶାନ୍ତିଃ।
◻◻

# ନିଜ ଇତିହାସ

ଇଏ କେଉଁ ପାପ
ଜୀବନର ପିଠିରେ ବସାଏ ମୋ ଘେଟ
ରକ୍ତାକ୍ତ ମାନସାଂକ
ପରିସଂଖ୍ୟାନ ମୂଲ୍ୟାୟନ ତୃଟି ଯୁକ୍ତ

ପ୍ରାରବ୍ଧର ଇତିହାସ ଅସ୍ପଷ୍ଟ ଅସ୍ଫୁଟ ଧ୍ୱନିର ଧ୍ରୁପଦୀରତ
ଅମୋକ୍ଷ ଇନ୍ଦ୍ରିୟ ସକଳ
ସହସ୍ରାରରେ ସର୍ପିଣୀଟିକୁ ଅହରହ କରନ୍ତି ବିକଳ
ଶିବ ଇକାର ବିବର୍ଜିତ ଓ ପ୍ରାଣଧାରା ବ୍ୟାହତ

ଦେହର ନିୟତି ଏହା ?
ସାତତାଳ ପଙ୍କ ତଳେ ପୋତା କନକ ଫରୁଆ
ତା'ଭିତରେ ପଦ୍ମବୀଜ
ଯିଏ ରଖିଚି ସିଏ କ'ଣ ବୁଢ଼ୀ ଅସୁରିଣୀ ?

ଚୂଲିରେ ପୁରାଇ ଗୋଡ ଜୀବନକୁ ରାଂଧୁଚି ନିଜେ ମୁଁ
ନିଜେ ମୁଁ ପାପର କଜ, ପୁଣ୍ୟର କସ୍ତୁରୀ ସୁବାସ
ନିଜେ ମୁଁ ଅର୍ଥ ଏବଂ ନିଜେ ମୁଁ ଦାରିଦ୍ର୍ୟର ଦାସ
କର୍ମର ଜୁଇରେ ଜଳିଜଳି ଭୋଗୁଚି ଜୀବନର ଦୁଇପାର୍ଶ୍ୱ

ଭୋଗୁଚି ମୁଁ ବଂଚିବାର ନିଜ ଇତିହାସ !
□□

## ମଝି ଋତୁର ମେଘ

ଭାବନାମାନ ମୋ ନିଜ ହାତ ଗଢା ମୂର୍ତ୍ତି
ସେମାନଙ୍କୁ ମୁଁ ଡେଣା ଲଗାଇ ଦେଇଛି
ସେମାନେ ସ୍ୱର୍ଣ୍ଣ କୁହୁଡ଼ି, ଧୂମପରି ଉଡୁଛଂତି
ସମୁଦ୍ର ଊର୍ଦ୍ଧ୍ୱରେ

ଭାରି ସାଦା, ଈଶ୍ୱରଙ୍କ ପରି ଭାରି ସିଧା
ତମେ ବାଂଟି ଦିଅ ସବୁ ଦୁଃଖ, ଜହ୍ନି ଓଷା ଭୋଗ
Like God I'm doomed the misery and woe
ତମେ ମୋ ହାତ ତିଆରି ଖୁସିର ପୁଷ୍ପ ନ ନିଅ ।

ସମୟ ଜାଣିଛି
ଭାବନାର ହାଂଡିରେ ଯାହା ସିଝେ ତାହା ଜୀବନ
ତୁମେ ଅପରିଚିତ, ଆମ ପ୍ରେମ ନ ହେବା ପର୍ଯ୍ୟନ୍ତ
ତୁମକୁ ଡାକୁଚି, 'ଆସ ! ଫୁଲକୁ ଯେମିତି
ଡାକିଥାଏ ବସଂତ ।

ସହାନୁଭୂତିପୂର୍ଣ୍ଣ ତୁମ ଦୁଇ ଆଂଠୁ ଉପରେ
ଖସି ପଡୁଚି ମୋ ଧନ୍ୟବାଦ
ତମେ ନ ନିଅ
ପ୍ରଫୁଲ୍ଲ ଓ ପ୍ରଶାଂତି ଶ୍ୱାସରୁଦ୍ଧ !

ପ୍ରେମ ତ ଗୋଟିଏ ନୀଳକାଳିର ଦସ୍ତଖତ
କବିଟିଏ ହୋଇ ମୁଁ ରହିଗଲି ତଥାପି ଏବେ ପର୍ଯ୍ୟନ୍ତ
ଶରତଋତୁ କବାଟ ଖୋଲିବ ? ମିଠା ବ୍ୟଗ୍ର,
କିଂତୁ କେତେ ଯେ ରାଗିଛି ସ୍ୱର୍ଗ !
କେମିତି ଇଂଦ୍ରଧନୁ ପଡିବ । ।
□□

# ଶେଷ ମେଘର ଋତୁ

ଡୋଳା ଦୁଇଟା ତ ଦୁଇଖଂଡ ନୀଳ ପ୍ରବାଳ,
ମୁକ୍ତିର ଫୁଲ;
ମୋକ୍ଷ ପଦ୍ମ ଦୁଇ ବକ୍ଷୋଜ, ମୁହଁଟି ଜହ୍ନ;
ଦିହଟି ଚଂଦନ ଚଂଦନ !

ସତ୍ୟକୁ ଅନୁଭବ କଲ ?

ପ୍ରକୃତିର ମୂଳ ନିୟମ ରୂପ
ରୂପର ନିରାଜନା ପାତ୍ର ସ୍ପର୍ଶ,
ଅନୁଭବର ଗଂଠି ଖୋଲିଦିଏ କାମାତୁରା ଚୁଂବନ;

ଆଗକୁ ଜ୍ୟୋତିର ଅନୁପମ ନିୟମ !

ଆଲିଂଗନର ଆହ୍ୱାନ ତମାମ ମଧ୍ୟାହ୍ନ
ସଂପର୍କର ଆଦାନ ପ୍ରଦାନ ! ଯୁଗଯୁଗାଂତ ପ୍ରସାରିତ
ଅପେକ୍ଷାର ନିଜଇଚ୍ଛା, ନିତ୍ୟ ନା ଅନିତ୍ୟ ?

ରହସ୍ୟମୟ ସ୍ମୃତିର ପକ୍ଷୀ
ହଜିଲା ହୃଦୟକୁ ଖୋଜୁଛି,
ଖୋଜୁଛି ଶେଷ ମେଘର ଋତୁକୁ;

ଆନଂଦମୟ ଆତ୍ମା ଆଜି ବଦଳିଯାଇଛି !

ସବୁ ଉପଚାରକୁ ବଦଳାଇ ଦେଇଛି ଅଭାବ,
କେବଳ ତମରି ଅଭାବ; ପୁଣ୍ୟର ଶୂନ୍ୟ ବାଲାନ୍ସ
ତମେ ? ? ମୋ ଶିହରିତ ଆତ୍ମାର ଗୁଣୁଗୁଣୁ

ଅନ୍ୱେଷାର କୁମାରୀ ହୁକୁମ !
□□

# ଅଙ୍ଗୁଷ୍ଠମାତ୍ରଃ

ମୁଁ ଜାଣିଛି
ପୋଏଟ୍ରୀ ଇଜ୍ ଏ ଲଭ୍ ଆଫେୟାର୍
-ଏ ଲଭ୍ ଆଫେୟାର୍ ଉଇଥ୍ ଏକ୍‌ଜିଷ୍ଟେନ୍ସ;
ମୋ କବିତା ମୋ ପ୍ରେମ ।

ଓଁ ପରମ ପ୍ରେମ ରୂପାୟ ନମଃ, (ଶିବସୂତ୍ର) ।
ଲଭ୍ ଇଜ୍ ଗଡ୍, ମୋ କବିତା ମୋ ଈଶ୍ୱର
ମୋ ଈଶ୍ୱର, ଏ ପ୍ରେୟାର, ଜୀବନ ପ୍ରକ୍ରିୟାକୁ,
ପ୍ରାଣବନ୍ତ ଅସୀମକୁ, ସସୀମ ଊର୍ଦ୍ଧ୍ୱର ଶାନ୍ତି ଓ ପ୍ରଶାନ୍ତିଙ୍କୁ ।
ତାଙ୍କ ଉପସ୍ଥିତି ତାଙ୍କୁ କରି ଦେଇଛି ସସୀମ
ସିଏ ମୋ ଆୟୁଷର ବିଭୂତି
ସିଏ ମୋ ଜନ୍ମ ବେଳର ମଧରାତ୍ରୀ
ଏବଂ ସିଏ ମୋ ମୃତ୍ୟୁବେଳର ଅମୃତ ମୁହୂର୍ତ୍ତ ।

ମୋ ପ୍ରେମିକା ନୈର୍ବ୍ୟକ୍ତିକା
ଜ୍ୟୋତିର୍ମୟୀ ସ୍ୱର୍ଣ୍ଣିମା ମଙ୍ଗଳମୟୀ ଭାଷା,
ସିଏ ଗୋଟିଏ ଦିବସର ଆଗମନୀ ବାର୍ତ୍ତା,
ପରମ ପୁଣ୍ୟା ଉଷା, ଅନ୍ଧାର ଚିରି ଉଠି ଆସିଥିବା

ତୁମକୁ ସ୍ୱାଗତ
ସ୍ୱାଗତ ମୋ ଅନ୍ତଃଚେତନାର ଝର୍ଝରିତ ପୁଷ୍ପ
ହେ ପ୍ରିୟ ନୀଳପଦ୍ମ
ଅଙ୍ଗୁଷ୍ଠମାତ୍ରଃ ।
□□

## ଆର୍.ଏନ୍. ମହାନ୍ତି

ସେହି ସ୍ମୃତି
ସମୟର ରୂପା ଟଙ୍କା ହଜିଲେ ବି
ହଜେ ନାହିଁ, ଯେମିତି ଜ୍ୟାମିତି
କିଂବା ଗଣିତର ଧାରାଟିଏ କିଂବା ନୂଆବର୍ଷଟିଏ ।
କ୍ୟାଲେଣ୍ଡରରୁ ଯେତେ ଫର୍ଦ୍ଦ ହଜିଲେ ବି
ସ୍ମୃତି ଏକମାତ୍ର ରତ୍ନ
ପ୍ରାଣର ପୃଥିବୀକୁ ଛାଡିଯାଏ ନାହିଁ
ନୂଆ ପୃଥିବୀର ଭୂଗୋଳକୁ

ଆର୍.ଏନ୍. ମହାନ୍ତିଙ୍କ ପାଦ ଧୋଇ ଦେଲା
ମିନତି ମିଶ୍ର
ଆର୍.ଏନ୍. ମହାନ୍ତି କିଏ ?
ସେ ଏକ ଧବଳ ଉପବୀତ; ପ୍ରେମିକ କପୋତ

ଚରିତ୍ର ତ ଜାଲଟିଏ ଏବଂ ଧର୍ମ ବି ଗୋଟିଏ ଜାଲ
ମଣିଷ ମାଛ, ପରିସ୍ଥିତିର ସମୁଦ୍ର;
ଆର୍.ଏନ୍.ମହାନ୍ତି ଶୈଶବରୁ ଅରବିଂଦିଆନ୍
ଜୀବନ ଟ୍ରେନ୍‌ର ଟିକଟ କରୁଥିଲେ ଯାଂଚ୍

ହଠାତ୍ ଏମିତି କେମିତି ବଦଳାଇ ଦେଲେ
ନିଜ ଡିୟୁଟିର ରୁଟ୍
ଖୋର୍ଦ୍ଧାରୋଡ୍‌ରୁ କଟକ ନୁହେଁ
ସଟଲ ଟ୍ରେନ୍‌ଟା ଚାଲିଗଲା ଅଚିହ୍ନା ସହରକୁ

ପ୍ରେମ ବଦଳାଇ ଦେଲା ମଲ୍ଲୀ ପୁଷ୍ପର ସୁବାସ
ଗେଂଡୁ ଗେଂଡୁ ବାସିଲା ଗୋଲାପ

ବହନ୍ତା ଧାରକୁ ବଢାଉ ନଥିବା ପାଦ
ପାରି ହୋଇଗଲା ଧର୍ମର ନଦୀ, ବଦଳିଗଲା କାମିଜ
ପ୍ରିୟ ରବିବାବୁ, ଆପଣ ଅଛନ୍ତି କେମିତି
ମୁଁ ଆଉ ଯାଇ ପାରିଲିନି ଜଟଣୀ।

ଶେଷ ଦେଖା
ଶାୟିତ ଶିଶୁପୁତ୍ରକୁ କାନ୍ଧରେ ପକାଇ
ଆପଣ ଫେରୁଥିଲେ ମଥୁରାରୁ ବାଛରା
ଭର୍ତ୍ତି ସ୍ମିତର ନୀଳ ଜ୍ୟୋସ୍ନା
ଆପଣଙ୍କ ମୁହଁର ଡ୍ରଇଂଖାତା

ମୋ ପାପୁଲିରେ ଗୁରେଇ ହୋଇଗଲା
ସବୁଥରପରି ଆପଣଙ୍କ ଉଷୁମ୍ ପାପୁଲି
ବରଂ ହୃଦୟର ଉଷ୍ମ ସ୍ପର୍ଶ
ଛଳନାହୀନ ଅକୃତ୍ରିମ ବେଦାଗ ସଂପର୍କ
ଦୁଇପ୍ରାଣ ଓ ମନର ମୟୂର କରିଥିଲେ ନୃତ୍ୟ

ପଦ୍ମପରି ନିର୍ମଳ ବଂଧୁତ୍ୱ
ଦେଖା ହେଲେ ଖୋଲିଯାଏ ପ୍ରାଣକୋଷ,
ମନକୋଷ, ଉଇଁଯାଏ ଆନଂଦ ନକ୍ଷତ୍ର
ଅନେକ ରାତିର ଆଳାପ
ଶୀତରାତିର ଚା'କପ୍ ଓ ଦିବ୍ୟ ଦ୍ୟୁତିଗପ

ସ୍ମୃତିରେ ସବୁ ଏବେ ବି ବଂଚିଛି ମୋ।

ଜୀବନ ଖାତାରେ ସାହିତ୍ୟର ଅଙ୍କ ଓ
ସାହିତ୍ୟ ଖାତାରେ କଷିବା ଜୀବନର ଗଣିତ
ଆପଣ ଦେଖାଉଥିଲେ ସ୍ୱପ୍ନ।
ଆବେଗ ଉଦ୍ଦୀପକ କେତେ ଉତ୍ସାହର ଦୃଶ୍ୟ

ପ୍ରିୟ ବଂଧୁ ମୋ, ଆପଣ ବୟସ୍କ ଓ ପ୍ରାଜ୍ଞ
ପୁରୁଣା ଜୋତାପରି

ପୃଥିବୀକୁ ପରିତ୍ୟାଗ କରିବାର ମାନେ
କେବଳ ଆପଣ ଜାଣିଛନ୍ତି
ଆପଣଙ୍କ ପରି ଏତେ ପ୍ରାଜ୍ଞ ମୋ ପ୍ରିୟପୌତ୍ର
'ସ୍ୱାଗତ ବୋଧିସତ୍ତ୍ୱ' ହେଲା କେମିତି ?

ମଇ ଅଣତିରିଶ, ଅଠର ମସିହା, ପୂର୍ଣ୍ଣମୀ ରାତି
ସିଏ ବି
ତା' ଡ୍ରଇଂ ଖାତାରେ ଆଙ୍କି ଦେଖାଇ ଦେଲା ମତେ
ମୃତ୍ୟୁର ଚିତ୍ରଟି ! ବଡ ମର୍ମନ୍ତୁଦ
ଦୁଃଖ ତା' ସମସ୍ତ ସୀମା ଟପି ଯାଏ ଏମିତି ! !

□□

# ବୋଧିସତ୍ତ୍ୱ

।।ଏକ।।

ସକଳ ବିଶ୍ୱର ଜୀବନତତ୍ତ୍ୱ:ପ୍ରାଣପୁଷ୍ଟ,
ମନ: ଦିବ୍ୟ ଚୈତନ୍ୟର ଅଂଶବିଶେଷର କ୍ରିୟା
ଦେହ:ବହୁବିଧ ସମ୍ବନ୍ଧରୁ ଜାଗ୍ରତ ବସ୍ତୁତତ୍ତ୍ୱ,
ଇନ୍ଦ୍ରିୟ: ଦ୍ୱଂଦ୍ୱ ଓ କ୍ରିୟାର ପରିଣାମ ଅବା !

ଅରାଜକତାର ନିନାଦିତ କୁଳୁକୁଳୁ
ବିରୋଧ ଓ ବାଧାର ସେଓ ବଗିଚା
ଶୁଣାଇ ଦିଏ ନାହିଁ ପରମ ଶୃଂଖଳାର କଥା
ଇନ୍ଦ୍ରିୟଙ୍କ ରାସ୍ତା ଆରପଟେ ନୈଷ୍କର୍ମ୍ୟର ରତ ବଗିଚା !

ବିଚ୍ଛେଦ୍ୟ ମହିମାର ମଧୁରତାରେ ପକାଇଛି ଖଟା
ବିପୁଳ ଅନ୍ଧକାରର ବିସ୍ତାର ଉପଲବ୍ଧିକୁ ଢାଙ୍କିଛି ଛତା,
ଗଭୀର ଓ ନିବିଡତମ ସଂଶୟ, ସତ୍ୟ କ'ଣ ?
କ'ଣ ନିର୍ବିଶେଷ ? କେମିତି ଲିଭିଗଲା ଟିକକ ହସ ?

ମହାଇଚ୍ଛା: ଏତେ ନିଷ୍ଠୁର ? ଏତେ ଘୋର ?
କାହିଁକି ଏତେ ଘନିଷ୍ଠ ହେଲା ଏକ ରସ,
ବିଶ୍ୱ ବ୍ୟବସ୍ଥାର ସକ୍ରିୟତାରେ ଫାଟ
ଶାଶ୍ୱତତତ୍ତ୍ୱକୁ ଏମିତି କରାଏ ଅସତ୍ୟ !

ମୁଁ ଖୋଜୁଛି ପ୍ରାଣର ସ୍ନାୟୁରେ ମନ ଚେତନାକୁ
ଜ୍ଞାନର ରିକ୍ତ ଗନ୍ତାଘର ଗହଗହ କଂପୁଛି
ନିମ୍ନତର ସତ୍ୟ, କିଏ କଲା ବିଭାଜନ
ପ୍ରକୃତିର ମର୍ମ; ଚିରି ଦେଲା ସତ୍ୟର ସମ୍ବନ୍ଧ ?

ମଣିଷର ନିୟତି ଏତେ ଅନ୍ଧ; ଏତେ ଅଜ୍ଞ !
ହା ଦୁର୍ଦ୍ଦୈବ ! !
।।ଦୁଇ।।
ବୈରାଗୀର ମଜ୍ଜାଗତ ନେତି
ଅନଧିଗମ୍ୟ ବିଭୂତି
ତୁମେ ଜଡବାଦୀର ନାସ୍ତି
ସୀମବଦ୍ଧ ମାନସିକ ବୃତ୍ତିମାନ ମୋ
ସେତୁଟିକୁ ବୁଝିବ କେମିତି ?

ମୋ ଜଗତ ଇନ୍ଦ୍ରିୟଲବ୍ଧ ଜ୍ଞାନର ସାଧନ
ବିଶାଳ ସତ୍ୟ କେବଳ ମୋ ଅନୁମାନ
ଅଭିଜ୍ଞତାର ସକଳ ପ୍ରମାଣ ବିଶାଳ କ୍ଷେତ୍ରକୁ ଚିହ୍ନେନା
ମହତ୍ ହୀନ ଓ ସମ୍ବଳଶୂନ୍ୟ ଏ ଜୀବନ

ପ୍ରସନ୍ନତା ଉପରେ କାହିଁ ତା'
ବିଜୟୋନ୍ମତ୍ତ ପ୍ରଭୁତ୍ୱ ହାସଲ
ଚତୁର୍ଦ୍ଦିଗ ଭଙ୍ଗା ଦମ୍ଭ ଓ ଅବର୍ଣ୍ଣନୀୟ ବର୍ତ୍ତୁଳ ବିଷାଦ
ଅସ୍ତିତ୍ୱର ରୂପାୟନକୁ କରେ ନିୟନ୍ତ୍ରିତ

କେମିତି ଭାଙ୍ଗିଯାଏ ସ୍ୱଚ୍ଛ ସ୍ଫଟିକ
ନୀଳ ପ୍ରବାହ ଚିହ୍ନିଥାଏ ଯଥାର୍ଥ ଲକ୍ଷ୍ୟ
ଏହି କ'ଣ ଛଂଦୋମୟ ପରିପୂର୍ଣ୍ଣ
ମୋ ନଟର ପୂର୍ବ ସିଦ୍ଧ ନୃତ୍ୟ ଓ ନୈପୁଣ୍ୟ

ଅଚିହ୍ନା ସେ ରୂପ ଅନତିକ୍ରମଣୀୟ ନାମ
ଅନାମ; ମାୟାର କଳ୍ପନା ?
ମିଥ୍ୟାର ଅବ୍ୟକ୍ତ ସ୍ୱରୂପ, ତୁ କ୍ରିୟାଶୀଳ
କାହିଁକି ? ପୂର୍ଣ୍ଣମୂଲ୍ୟ ଦେବୁ ନାହିଁ ବୋଲି ?

ମୁଁ ତ ତତେ ମାଗୁ ନଥିଲି ଜବରଦସ୍ତି
ମୁଠାଏ ପିଣ୍ଡ କି ପାତ୍ରିଏ ଜଳ

ଏମିତି କେମିତି ତୁ ଲିଭାଇ ଦେଲୁ ବାଲିରେ ଲେଖା
ତୋ ବାସ୍ତବ ଅଦ୍ୱୈତବାଦୀ ସ୍ୱାକ୍ଷରର ସ୍ୱର

'ବୋଧିସତ୍ତ୍ୱ' କ'ଣ ଗୋଟେ ମିଛ ଟିପ ଚିହ୍ନ
ମିଛ ଗୋଟେ ଅନଂତର ନାମ
ସତ୍ୟର ଠିକଣାଟା କେବେ ନୁହେଁ ମିଛ
ଶୁଦ୍ଧସତ୍ତା ରୂପମୟ ସ୍ପଂଦନ, ଏମିତି ଦିଏ ଏତେ ଦୁଃଖ ?

।।ତିନି।।

ମତେ ପରିଶୋଧ କରିବାକୁ ହେଲା
ସମ୍ବନ୍ଧଯୁକ୍ତ ସୌନ୍ଦର୍ଯ୍ୟ
ମତେ ପରିଶୋଧ କରିବାକୁ ହେଲା
ପ୍ରଶଂସନୀୟ ମୋ ଜୀବନ ଓ ବିଧି ବିଧାନ

ସର୍ବାପେକ୍ଷା ମହତ୍ତମ ବସ୍ତୁ ମତେ
ପରିଶୋଧ କରିବାକୁ ହେଲା ସ୍ୱଧର୍ମକୁ ଓ ପ୍ରୟୋଜନକୁ
ବିଚିତ୍ର ଧାରା ! ଅମୃତମୟ ଊର୍ଦ୍ଧ୍ୱକୁ ପ୍ରବାହିତ
ଅଥଚ ସୋପାନଶ୍ରେଣୀ ଲମ୍ବିଛି ନିମ୍ନକୁ !

ନିମ୍ନରେ ଉଦ୍ଦେଶ୍ୟଯୁକ୍ତ ଗୃହସ୍ଥାଶ୍ରମ
ଏବଂ ଊର୍ଦ୍ଧ୍ୱରେ ତୃପ୍ତି ସାଧନ ଉପଲବ୍ଧିର ଆସନ
ଶୀର୍ଷାସନ
ଜୀବନର ଚରମ କ୍ରମଶଃ, ମୋକ୍ଷ ଓ ଆଧ୍ୟାତ୍ମିକ !

ଜୀବନଚକ୍ର ଅତିକ୍ରମ କରୁଚି ଉନ୍ମୁକ୍ତ ଅସୀମପଥ
ନିଜ ସହିତ, ନିଜ ବିଷୟ ସହିତ ଏବଂ
ନିଜ ବିନିମୟ ସହିତ କାମମୟ ଓ ଭୋଗମୟ
ଭୂ'କୁ ! ରହସ୍ୟମୟ ଦୁର୍ଭାଗ୍ୟର ହୃଦୟକୁ

କୁଆଡେ ଗଲା 'ବୋଧି', ମୋ ହୃଦୟର ଆଖି,
ଚିରି ହୋଇଯାଉଛି ପ୍ରାଣର ଲମ୍ବା କାଗଜଟି !

କାହିଁକି ଆସିଥିଲା, କୁଣିଆ ଯେମିତି !
ଏକବର୍ଷ ଏକମାସ ଆଠଦିନ ଲାଗି

ଏମିତି କେମିତି ଜଗତକୁ କଲା ସିଏ ହୃଦୟଙ୍ଗମ ଯେ
ମାଟି ମା' ପ୍ରତ୍ୟାଖ୍ୟାନ କଲା ତା'ଉପସ୍ଥିତି
ରୂପ ଧାରା ଲୁଚିଗଲା
ଦୁଃଖ ଦେବତାଙ୍କ କାନ୍ଧ ଆରପଟେ !

ଅକାଳ ପୁରୁଷଙ୍କ ଆରାଧନା ଏତେ ବ୍ୟାପକ
ଜିଜ୍ଞାସାର କେନ୍ଦ୍ରକୁ
ତପ୍ତ ନିଃଶ୍ୱାସରେ କରେ ଅସ୍ତବ୍ୟସ୍ତ
ସମୁଦାୟ ଉପସ୍ଥିତି ବୁଦ୍ଧି ମୋ ପାରୁନାହିଁ ବୁଝି

ସବୁ ଜଟିଳତାରେ, ନୀରସ ସଂଦେହରେ, ଅପଖ୍ୟାତ
ଅମଡା ଓ ଅକଳ୍ପନା ଶାଖା ପ୍ରଶାଖା ଘନୀଭୂତ
'ଏକମେବ'
ପୁରୁଷର ସତ୍ୟ ଲାଂଛିତ ଓ ଅପମାନିତ
କେଂନ୍ଦ୍ରିତ ସତ୍ୟ
ମୃତ୍ୟୁ ମଣିଷର ହାତଗଢା ମୂର୍ତ୍ତି ! !

ନିଗୂଢତତ୍ତ୍ୱ ସମୁଦାୟ ବିକୃତ
କାହାଣୀର କଳାସ୍ରଷ୍ଟା
ଅନ୍ଧକାର କହୁଛି
ସେ ଆଲୋକର ନିଜ ଆତ୍ମା
ବଦଳାଇ ଦେବ ମହାକାଳର ଅଭିଲେଖ
ଏବଂ ଗତି ସ୍ରୋତ ?

ଅସହାୟତା ଉତ୍ତୋଳିତ କରୁଛି ହାତ
ତମେ ଅଛ ?
ଯଦି ନାହଁ
ତେବେ, 'କିର୍‌ଲୋଭ୍ ଇଜ୍ ଗଡ୍' ?

ଆଃ ! ଲିଭାଅ ଏଇ ଶବ୍ଦର ହିଟର୍
ଜଳିଯାଉଛି ଶୂନ୍ୟ ଜୀବନର ସିଲ୍‌ଭର ଡେକ୍‌ଚି
ଆଉ ବସାଅ ନାହିଁ ଆମ୍ଭାରେ ମୋ ଚୋଟ
ତୁମ ହାତ
ଓ କୁରାଢ଼ିକୁ ଆଉ ଦିଅ ନାହିଁ କଷ୍ଟ
ହେ ଖଳନାୟକ !

ଅଜ୍ଞାନେନାଂ ବୃତଂ ଜ୍ଞାନଂ
ତେନ ମୋହନ୍ତି ଜନ୍ତବଃ !

ଆଃ, ଦୁଃଖେ ଏମିତି ବୁଜିଦିଏ କାଳର କବାଟ
ଏମିତି ଆଉ ଭାଙ୍ଗ ନାହିଁ ହୃଦୟର ପାତ୍ର !

।। ଛରି ।।
କାଣ୍ଡହୀନ କଳ୍ପନା
ସ୍ୱପ୍ନ ମୋ ଈଶ୍ୱର
ଭାବନା ମୋ ସାଧନା
ମୁଁ ନିର୍ବାକ୍ ଯଂତ୍ରଣା !

ଲିଭାଇ ଦେ'ରେ ଅବ୍ୟକ୍ତ ନିଃଶବ୍ଦତାକୁ
ଲିଭାଇ ଦେ'ରେ ପ୍ରତୀତ ସମାଧାନକୁ
ଲିଭାଇ ଦେ'ରେ ପ୍ରତ୍ୟକ୍ଷ ଗୋଚରକୁ
ଅକର୍ତ୍ତା ତୁ, ଅକର୍ତ୍ତା ବି ମୁଁ !

ପାଇ ନଥିବା ଏ ଅପୂର୍ଣ୍ଣ ଉପଲବ୍ଧି
ନିଶ୍ଚିତ ବିଭ୍ରାନ୍ତି
ପ୍ରଲୁବ୍ଧ ମୁଁ
ଭର୍ତ୍ତି ନିଷେଧ ଉପାଦାନ ସବୁ;

ତ୍ରିରଙ୍କୁ କାଟି ତୁ
କାହାକୁ ସମର୍ପିତ କଲୁ ?

।। ୧୧୫।।

ସେହି କ'ଣ ଏକ ସତ୍
ରତରେ ପ୍ରତିଷ୍ଠିତ;

ଅନନ୍ତକୁ ମୁଁ
କରିପାରୁନାହିଁ ପ୍ରତ୍ୟକ୍ଷରେ, ପୌତ୍ର !

॥ ପାଂଚ ॥

ଷଡଦଂତ
ତଳେ ଦୁଇଟି ଉପରେ ଚାରୋଟି
ତୁ ତ ପାକୁଆ ଓଠ, ଡବଲ ଜଟ
ଜଟେଶ୍ୱର ଗଣେଶ, ଯେତେବେଳେ ନାଚୁ
ସବୁବେଳେ ତାଂଡବ: ଜଟା କଟାହ
ସଂଭ୍ରମ ଭ୍ରମମ୍ ନ୍ନିଲିଂପ ନିର୍ଝରୀ... !

ଅମୃତବନର ପାରିଜାତ, ଆରେ
କେମିତି ଗଲୁ ତୁ ଝରି ?
ଅଜସ୍ର ଶୋଷ ତ ତୋ କୋମଳ ଓଷ୍ଠରେ
ବୈଶ୍ୱାନର, ତୁ ଶୋଷି ନେଲୁ
ତୋ ମା'ର ସମସ୍ତ ସମୁଦ୍ର, ଦେଲୁ ଏତେ ଦୁଃଖ ?

ଆଲୋକ ଓ ଶୀତଳ ପବନ ତୋ ପ୍ରିୟ
କେମିତି ଏ ପୃଥିବୀ ହେଲା ତୋ' ଅପ୍ରିୟ
ତୋ ମା'ର ଋଣାନୁବଂଧନ; ଦେଇ କେଉଁ ପୁଣ୍ୟ
ପୋଛିବୁ ତା' ସୁତପ୍ତ ଲୋତକ ଲୋଚନ ?

ତୋ ବାପାର ଛାତି
କେମିତି ଦୀର୍ଣ୍ଣ ହୋଇଯାଉଛି...
'ବୁ...ବୁନ୍', ବକ୍ଷରେ ଧରି ତୋ ନାଁ' ଧରି ଡାକି ଦେଲେ
ହସି ଉଠୁ ଓଠ ଖୋଲି, ନିଃଶବ୍ଦ ଫୁଲଝରି !

କ'ଣ ଭାବି
ତୋ ଫଟୋକୁ ଦେଉଥିଲୁ ଓଲଟାଇ

ତଳେ ଦେଉଥିଲୁ ଫିଙ୍ଗି, କ'ଣ ଭାବି,
ତୁ ଦିବ୍ୟଦ୍ରଷ୍ଟା, ଦେଉଥିଲୁ ତୋ ଫେରିବା ବାର୍ତ୍ତା ?

ଆମେ ଅନ୍ଧ, କେମିତି ବୁଝିବୁ କହ
ତୋ ଟିକିଟିକି ପାପୁଲି, ସରୁସରୁ ଆଂଗୁଠି
କେମିତି ପୋଛିବ କହ
ଆମ ଫଟା ହୃଦୟର କୋହ, ଧନ ମୋର !

ତୋ ତୈଳହୀନ ଦୀପଟି ପୂର୍ଣ୍ଣ କରି ଦେବାକୁ
ମୁଁ ଯାଚି ଦେଲି ମୋ ଆୟୁଷ
ସମର୍ପିତ କରିଦେଲି ଅବଶିଷ୍ଟ ମୋ ବଗିଚାର ଗୋଲାପ
ସାଂଗୀତିଜ୍ଞର ବୀଣାରେ ନଥିଲା ସଂଗୀତରେ, ପୌତ୍ର !

ମୁକୁଳିତ ଯଂତ୍ରଣା କଢରୁ ହେଉଥିଲେ ପୁଷ୍ପ
ଜଳୁଥିଲେ ଦୀପ, ପ୍ରଜ୍ଜ୍ୱଳିତ ତୋ ଆତ୍ମଶିଖାପରି
ଐଶ୍ୱରୀୟ ଲୀଳାର ଶୋଷ ହେଉଥାଏ ଅପବିତ୍ର
ଭର୍ତ୍ତି ମଦ୍ୟପାତ୍ର ଭାଂଗୁଥିଲା ମୃତ୍ୟୁ ଦୁଷ୍ଟରିତ୍ର !

କରୁଣାକୁ ପ୍ରତ୍ୟାଖ୍ୟାନ କରୁଥିଲା ପାର୍ଥିବ ବସ୍ତୁ
ଉଜ୍ଜ୍ୱଳ ସୌନ୍ଦର୍ଯ୍ୟର ସବୁଜ ବସ୍ତ୍ର ହେଉଥାଏ ଦାଗଦାଗ
ଖଂଡେ ଶୁଦ୍ଧ ସୁବର୍ଣ୍ଣ ହେଉଥିଲା କଳାମାଟି
ତୋ ନାକରେ ପାଇପ୍, ହାତରେ ପାଇପ୍

ମୁହଁରେ ପ୍ଲାଷ୍ଟିକ୍ ମୁଖା
ଜୀବନ ସଂଗୀତକୁ କରୁଥିଲା ପୁନର୍ନୂତନ;
ନା' ତୋ ପ୍ରଶ୍ୱାସ ଉତ୍ତର ଦିଗର ସୁବାସ
ପୁଣ୍ୟ ଗଂଗାର ନୀଳ ସ୍ରୋତ ତାକୁ କରୁଥିଲା ଆକୃଷ୍ଟ ?

କରୁଣାମୟଙ୍କ ପ୍ରେମର ସ୍ୱାଦ
ଦୌଡରେ ସମସ୍ତଙ୍କୁ ଟପିଯିବା ପ୍ରାପ୍ତ ଆନଂଦ,
ହେ ମୋ ଆତ୍ମାର ସୂକ୍ଷ୍ମାତି ସୂକ୍ଷ୍ମ ଲୋହିତ ବୀଜପତ୍ର,
ମୋ ପୁଣ୍ୟର ଅଭାବ ! ଯା'ରେ ଦେଇ ଯା' ଦୁଃଖ

ତୁ ଯା, ତତେ ଡାକୁଚି ଗଂଗା
ତୁ ତା' ପ୍ରିୟ ପ୍ରେମିକ
ଶାପମୁକ୍ତ ଲଂଗଳା ଶିବ, ଯା'
ଯା, ତୋ କୈଳାସକୁ ଫେରି ଯା' ।

ମୁଁ ସହ୍ୟ କରୁଛି
ମୋ ଅମୋକ୍ଷ ଜୀବନର ସମସ୍ତ କଷ୍ଟ
ମୋ ହୃଦୟ କଂସାରେ ଭର୍ତ୍ତି
ଅସରଂତି ଶୋକ ପଖଳା ଦୁଃଖର ଭାତ ।

□□

## ବାକ୍‌ମୟୀ

ଅକ୍ଷରରୁ ଶବ୍ଦ
ଏବଂ ଶବ୍ଦରୁ ପଦ
ପଦରୁ ତତ୍‌ପଦ
ତୁମରି ଜନ୍ମ ଓ ତୁମରି ନାମ ।

ତୁମେ
ତତ୍ ତ୍ୱମସି;
ମୁଁ
ସୋଽହମ୍;
ଗୋଟିଏ ଶକ୍ତି
ଚିତ୍ର ଦୁଇଟି । ଚିଦ୍ ସମୁଦ୍ର ଓ ଅଚିତ୍ ଅପ୍ ।

ଆତ୍ମବିଦ୍ୟା
ଜୀବସ୍ୟ ବ୍ରହ୍ମତ୍ୱ
ମତେ ତୁମେ ଫେରାଇ ଦେଲ
ଫେରାଇ ଦେଲ ମୋ ତତ୍‌ପଦ ?

ମଂତ୍ରସ୍ୟ ସ୍ୱାହା
ଋଷି ଅଥର୍ବାର ମୁକୁଟ
ହିରଣ୍ମୟ ପାତ୍ର,
ମୁଖଟି ତା' ଆଚ୍ଛାଦିତ;

ବ୍ରହ୍ମ ଓ ବାକ୍
ଗୋଟିଏ ମିଥୁନ
ଏକ ଚିନ୍ମୟ ମିଶ୍ରଣ
ତମେ ତାକୁ ଲୁଚାଇ ରଖିଥିଲ ?

ଏତେ ଦିନ ?
ଏତେ କାଳ ! ! କାହିଁକି
ଯେଣୁ ଜହ୍ନଟା ପୁଣ୍ୟ ନୁହେଁ,
ପାପ ! ଅଣାନୁମୋଦିତ କଳଂକିତ
ଚିତ୍ର !

ଫୁଲପରି କାର୍ଯ୍ୟ କରୁଛି ପବନ
ପବନପରି କାର୍ଯ୍ୟ କରୁଛି ଶବ୍‌ଦ
ମୋ ହୃଦୟ ମଂଚ
ନାଚୁଛି ମନ, ଦେବତ୍ୱର ସମ୍ମାନ !

କାଳକୁ କାଳ
ଜନ୍ମକୁ ଜନ୍ମ
ପ୍ରକୃତିର ବାସଗୃହରେ
ଲାଗିଛି ଉତ୍ସବ !

ଶବ୍‌ଦ ନାଚୁଛି ତାଣ୍ଡବ
ଅର୍ଥଟି ମୋହିନୀ
ମା' ରାଧାରାଣୀ, ତୁମେ
ପରଷୁଛ ପ୍ରେମ, ପ୍ରେମ କେବଳ ଉଜାଣି !

□□



ନକୁଳ ଚନ୍ଦ୍ର ସାହୁ, ଭାଷାର ଭାସ୍କର୍ଯ୍ୟ, ଭଙ୍ଗୀର ଭିନ୍ନତା, ଭାବର ଭବ୍ୟତାରେ ଏକ ବିସ୍ମୟକର ବ୍ୟତିକ୍ରମ । ତାଙ୍କ ପ୍ରକାଶ ଭଙ୍ଗୀମା ଯେତିକି ଆଧୁନିକ ସେତିକି ସମୟ ନିର୍ଭର ଓ ସର୍ବକାଳିକ ।

ନକୁଳ ଚନ୍ଦ୍ରଙ୍କ କବିଦୃଷ୍ଟି , ସମାଲୋଚକୀୟ ଅଙ୍ଗୀକାରବଦ୍ଧତା ଓ ଗଳ୍ପପ୍ରାଣ ଓଡ଼ିଆ ସାହିତ୍ୟର ଅନ୍ୟତମ କୋଠ ସମ୍ପତ୍ତି । ସେ ନିଜର ସାରସ୍ୱତ ପ୍ରୟାସରେ ସମକାଳୀନ ଶବ୍ଦଘରକୁ ଋଦ୍ଧିମନ୍ତ କରିଛନ୍ତି, କରିଛନ୍ତି ପରିବ୍ୟାପ୍ତ ।

ଡ. ଫଣୀନ୍ଦ୍ର ଭୂଷଣ ନନ୍ଦ
ଅମୃତ ଅଭୀପ୍ସାର ସନ୍ଦର୍ଭ, ପୃଷ୍ଠା-୧୬୬




ISBN 978-93-85316-57-9


KAVYALOKA
Nizigarh Kurukhi,
Harirajpur, Jatni, Puri-752050

₹ [illegible]/-